# ନଟଖଟ ନାଟକ

(ଶିଶୁ ନାଟକ ସଂକଳନ)

ନାଟ୍ୟକାର :
**ଗୋପାଳ ଛୋଟରାୟ**
ଆଲମଚାନ୍ଦ ବଜାର, କଟକ-୨
ପ୍ରକାଶକ :
**ଶ୍ରୀ ଗୋବିନ୍ଦ ଚରଣ ପାତ୍ର**
**ଓଡ଼ିଶା ବୁକ୍ ଷ୍ଟୋର**
ବିନୋଦ ବିହାରୀ, କଟକ-୭୫୩୦୦୨
ପ୍ରଥମ ପ୍ରକାଶ : ୧୯୮୬
ମୁଦ୍ରଣ :
**ଗୀତାଞ୍ଜଳି ପ୍ରେସ**
**କଟକ-୨**
ପ୍ରଚ୍ଛଦ :
**ଛନ୍ଦାଚରଣ ଆଚାର୍ଯ୍ୟ**
ମୂଲ୍ୟ : ପାଞ୍ଚ ଟଙ୍କା ମାତ୍ର

**NATKHAT NATAKA**
(Children Play Collection)
*Written by* :
**Gopal Chhotray**
*Published by* :
**Gobinda Charan Patra**
**ORISSA BOOK STORE**
Binod Behari, Cuttack-753002
Ist Published-1986
*Printed at* :
**Gitanjali Press**
Cuttack-753002
Cover design :
**Chhanda Charan Acharya**
*Price* : **Five Rupees Only**

# ଚରିତ୍ର

ରାଜା

ମନ୍ତ୍ରୀ

ବିଠୁ

ଜଣେ ଲୋକ

ବିଠୁର ବୋଉ

ଜଣେ ସ୍ତ୍ରୀ

# ବୋକାରଜା ବୋକାମନ୍ତ୍ରୀ

[ରଜା ରଜପୁଅଙ୍କ ଅମଳର କଥା...ଏକ ରଜ ଉଆସର ସମ୍ମୁଖ ଭାଗ। ରଜା ଓ ମନ୍ତ୍ରୀ ଠିଆ ହୋଇଛନ୍ତି। ରଜା ଖୁବ୍ ଜୋର୍‌ରେ ହସୁଛନ୍ତି]

ରଜା—(ଜୋର୍‌ରେ ହସି ହସି) ହସ ମନ୍ତ୍ରୀ, ହସ—ପାଟି ବନ୍ଦ କରି ଠିଆ ହେଲ କାହିଁକି ? ମୋ ଭଳି ହୋ ହୋ ହେଇ ହସ।

ମନ୍ତ୍ରୀ—ହସିବି ମହାରଜ !

ରଜା—ପଚ୍ଚରୁଚ ପୁଣି ! ଦେଖୁନ, ସଟାକ୍ ସଟାକ୍ ଗୁବୁକ୍ ମାଡ଼ ଖାଇ ଚୋକାଠା କେମିତି ଗୁଡ଼ିପିଡ଼ି ହେଇ ପଳଉଚି !

ମନ୍ତ୍ରୀ—(ରଜାଙ୍କ ସହିତ ହସି) ସତେ ଏକା ମହାରଜ; କଅଁଳା ବାଛୁରି ଭଳି ଚୋକାଠା ଯେମିତି ଧାଇଁ ପଳଉଚି, ଦେଖିଲେ ମଣିଷ ନହସି ରହି ପାରିବ ନାହିଁ।

ରଜା—ଚୋକାଠାର ସାହସ ଦେଖ ! ନାଁ ଜଣା ନାହିଁ—ଗାଁ ଜଣା ନାହିଁ—ସେଥିରେ ସେ ପୁଣି ଆସିଚି ମତେ ବୋକା କରି, ମୋ ଝିଅକୁ ବାହାହେଇ ମୋ ରଜ୍ୟରୁ ଅଧେ ନେବ !

ମନ୍ତ୍ରୀ—ସେଇ କଥା ପରି ମହାରଜ—ଆପଣ ଯୋଉ ବୁଦ୍ଧିଆ କାମ କରିଚନ୍ତି !

ରଜା—ଏଁ ! ମୁଁ କି ବୁଦ୍ଧିଆ କାମ କରିଚି ?

ମନ୍ତ୍ରୀ—ଆମ ରଜକୁମାରୀ ସ୍ୱର୍ଗର ଅପ୍‌ସରୀ ଭଳି ସୁନ୍ଦରୀ ବୋଲି, ତାଙ୍କୁ ବାହା ହେବା ପାଇଁ ଦୂର ଦେଶରୁ ରଜପୁଅମାନେ

ଆସି ଏଠି ଭୁଣ୍ଡ ହେଲେ । ଜଞ୍ଜାଳ ଏତେ ବଢ଼ିଗଲା ଯେ ରାଜକାର୍ଯ୍ୟ ଆଉ ଚଳେଇ ହେଲାନି ।

ରାଜା—ଠିକ୍ ତ···ଠିକ୍ ତ ।

ମନ୍ତ୍ରୀ—ଆପଣ ତ ବୁଦ୍ଧିମାନ୍ ମହାରାଜ ! ଏ ଜଞ୍ଜାଳରୁ ରକ୍ଷା ପାଇବା ପାଇଁ ଆପଣ ଘୋଷଣା କରିଦେଲେ ଯେ, ଯିଏ— ସେ ରାଜା ପୁଅ ହେଉ କି ଚଷା ପୁଅ ହଉ—ସିଏ ଯଦି ଆପଣଙ୍କୁ ବୋକା କରି ଦେଇ ପାରିବ, ତେବେ ସେ ରାଜକୁମାରୀଙ୍କୁ ବାହା ହେବା ସଙ୍ଗେ ସଙ୍ଗେ ରାଜ୍ୟରୁ ଅଧେ ପାଇବ ।

ରାଜା—ଆଉ ଯଦି ମତେ ବୋକା କରି ଦେଇ ନପାରେ—

ମନ୍ତ୍ରୀ—ତା'ହେଲେ ସେ ହରଣ ଛୁଆ ପରି ଫକ୍ ଫକ୍ ହୋଇ ଡେଇଁବା ଯାଏ, ତା' ପିଠିରେ ସଟାକ୍ ସଟାକ୍—ସଟାକ୍ ସଟାକ୍ ଗୁଡୁକ୍ ବାଜିବ !

ରାଜା—(ଗର୍ବ ସହକାରେ) କହିଲ ମନ୍ତ୍ରୀ, ମୁଁ ଖୁବ୍ ବୁଦ୍ଧିମାନର କାମ କରିନାହିଁ ।

ମନ୍ତ୍ରୀ—ସେଇ କଥା ପରା ମହାରାଜ । ଆପଣଙ୍କ ଭଳି ବୁଦ୍ଧିମାନ ଲୋକକୁ ବୋକା କରିବା ପାଇଁ ଏ ନିର୍ବୁଦ୍ଧିଆ ବୋକା ଟୋକାଗୁଡ଼ିକ ଆସି ଗୁଡୁକ୍ ଖାଇ ଖାଇ ଫେରୁଛନ୍ତି ।

ରାଜା—ଏଇ ଦେଖ ମନ୍ତ୍ରୀ, ସେ ଟୋକାଟା ଏବେବି କେମିତି ଧାଇଁ ଧାଇଁ ପଳଉଛି !

ମନ୍ତ୍ରୀ—କାଇଁ ମହାରାଜ—କୋଉଠି ? କୋଉଠି ?

ରାଜା—ଏ···ଇ ସେ କୁଦ ଉପରେ—

ମନ୍ତ୍ରୀ—ସତେ ତ ! ପାଗଳା କୁକୁର ପରି ପଡୁଛି ଉଠୁଛି— ଉଠୁଛି ପଡୁଛି—ତଥାପିବି ଧାଇଁ ଧାଇଁ ପଳଉଛି··· (ଦୁହେଁ ଜୋର୍‌ରେ ହସୁଥାଆନ୍ତି)

[ଗୋଟିଏ ଗାଁ । ଏଇ ଗାଁରେ ବଣ୍ଟୁର ଘର ।
ଘର ଭିତରେ ବଣ୍ଟୁ ଓ ତାର ବୋଉ ଅଛନ୍ତି ।
ପୂର୍ବବର୍ତ୍ତୀ ଦୃଶ୍ୟର କିଛି ସମୟ ପରର
ଘଟଣା ।]

ବଣ୍ଟୁବୋଉ—(କାନ୍ଦୁଥାନ୍ତି)

ବଣ୍ଟୁ—(ଗଳାକୁ ବିକୃତ କରି, ତା ବୋଉକୁ ଖତେଇ ହେଲଭଳି) ହୁଁ-ହୁଁ-ହୁଁ

ବଣ୍ଟୁବୋଉ—(କାନ୍ଦି କାନ୍ଦି) ବଣ୍ଟୁ !

ବଣ୍ଟୁ—ହୁଁ-ହୁଁ-ହୁଁ

ବଣ୍ଟୁବୋଉ—(ରାଗିଯାଇ) ବଣ୍ଟୁ !

ବଣ୍ଟୁ—ହୁଁ-ହୁଁ-ହୁଁ

ବଣ୍ଟୁବୋଉ—ହଇରେ ବଣ୍ଟୁ, ତୋ ବଡ଼ ଭାଇଟା ରୁବୁକ୍ ମାଡ଼ ଖାଇ ଖାଇ ସେ ଘରେ ପଡ଼ିଛି ଯେ···

ବଣ୍ଟୁ—ସେ ରୁବୁକ୍ ମାଡ଼ ଖାଇଛି ବୋଲି ତୁ ପରା ତାପାଇଁ କାନ୍ଦୁଛୁ —ମତେ ଆଉ କହୁଚୁ କ'ଣ ?

ବଣ୍ଟୁବୋଉ—ମୋ ପୁଅଟା ଏତେ ଦଶା ହୋଇ ପଡ଼ିଛି, ମୁଁ କାନ୍ଦିବିନି !

ବଣ୍ଟୁ—କିଏ ତୋତେ ମନା କରୁଛି କାନ୍ଦିବାକୁ ? ଯା'—ଭାଇ ପିଠିରେ ଜଡ଼ାତେଲ ମାଲିସ୍ କରି ଆଉ ସେଇଠି ବସି କାନ୍ଦ ।···ହୁଁ-ହୁଁ-ହୁଁ

ବଣ୍ଟୁବୋଉ—ତୁ ଏମିତି ହୁଁ-ହୁଁ-ହୁଁ ହଉଚୁ କାହିଁକି ?

ବଣ୍ଟୁ—ମତେ ତ କାନ୍ଦ ମାଡୁ ନାହିଁ । ନ କାନ୍ଦିଲେ ତୁ କହିବୁ— ବଡ଼ଭାଇ ପିଠିରୁ ଛାଲ ଉତୁରି ଯାଇଛି—ସାନ ଭାଇ ଆଖିରୁ ଟୋପାଏ ଲୁହ ବାହାରୁ ନାହିଁ । ସେଇଥି ପେଇଁ ମୁଁ ହୁଁ-ହୁଁ-ହୁଁ ହଉଚି ।

ବଣ୍ଟୁବୋଉ—ତୁଟା ଏଡ଼େ ନିଷ୍ଠୁର ! ଭାଇ ପାଇଁ ତୋ ମନରେ ଟିକିଏ ଦୟା ହଉନାହିଁ ?

ବଣ୍ଟୁ—ଦୟା ! ଏଇ ଭାଇ ପାଇଁ ମୋ ମନରେ ଦୟା ହବ ! ନିଜ ପେଟରେ ଟିକିଏ ବୁଦ୍ଧି ନାହିଁ, ସେ ପୁଣି ଯାଉଚି ରଜା ଭଳିଆ ଲୋକକୁ ବୁଦ୍ଧି ଶିଖେଇବାକୁ ? ସେଠି ଯାଇ କହୁଛି କଣ ନା—ଦେଖ ରାଜା, ସେ ଗଛ ମୂଳେ ଗୋଟେ ଗାଈ ଚରୁଚି ଯେ, ତା ମୁଣ୍ଡରେ ଦ'ଟା ଶିଙ୍ଘ ।...କରେ, ଗାଈ ମୁଣ୍ଡରେ ଶିଙ୍ଘ ନ ହେଇ କଣ ଭାଇ ମୁଣ୍ଡରେ ଶିଙ୍ଘ ହେଇଥା'ନ୍ତା ! ରାଜା କଣ ଏମିତି ବୋକା ହେଇଛନ୍ତି ଯେ ଭାଇ କଥାରେ ସେ ଗଛ ମୂଳକୁ ଅନାଇ ଥାଆନ୍ତେ ! ସେ ମୋଟେ ଅନେଇଲେନି । ଆଉ ଭାଇ ପିଠିରେ ଗୁବୁକ୍ ବାଜିଲା—ସଟାକ୍ ସଟାକ୍—ସଟାକ୍ ସଟାକ୍ ।

ବଣ୍ଟୁବୋଉ—(କାନ୍ଦି ଉଠିଲା)

ବଣ୍ଟୁ—ଆଣ—ମୋ ଜାମା ଆଣ—ପରେ କାନ୍ଦିବୁ ।

ବଣ୍ଟୁବୋଉ—ଜାମା କ'ଣ ହବ ! କୁଆଡ଼େ ଯିବୁ ?

ବଣ୍ଟୁ—ଓଃ—ଆଗେ ଆଣ କହୁଛି ।

ବଣ୍ଟୁବୋଉ—(ଜାମା ଆଣି ଦେଇ) ନେ ।...ଗୁବୁକ୍ ଖାଇଲା ବେଳକୁ ତୋ ଭାଇକୁ କେତେ କାଟି ନଥିବରେ ବଣ୍ଟୁ ! ତା' ଦେହ ସାରା ଦରଜ ହେଇଯାଇଚି ।

ବଣ୍ଟୁ—ସେଇ ଦରଜ ଛଡ଼େଇବା ପାଇଁ ତ ମୁଁ ଯାଉଚି ।

ବଣ୍ଟୁବୋଉ—ବାପାଟା ପର ଗଲୁ—ତା ପିଠିରେ ଟିକିଏ ଜଡ଼ା ତେଲ ମାଲିସ୍ କରିଦେବୁ ।

ବଣ୍ଟୁ—ଜଡ଼ା ତେଲ ମାଲିସ୍ କଥା ନୁହେଁ ବୋଉ—ଯୋଉ କାମ କଲେ ଭାଇ ଏକାବେଳେକେ ତା ଗୁବୁକ୍ ପାହାର କଥା—ତା ପିଠି ଦରଜି କଥା ଭୁଲିଯିବ, ସେଇ କାମ କରିବାକୁ ଯାଉଛି ।...ମୋ ଜୋତା କ'ଣ ହେଲା ?

ବଣ୍ଟୁବୋଉ—ଆରେ ତୁ ପୁଣି କୁଆଡ଼େ ଯାଉଚୁ ?

ବଣ୍ଟୁ—(ଜୋତା ପିନ୍ଧି) ମୋର ସେଇ ହରରଙ୍ଗୀ ଟୋପିଟା ଆଣ୍ ।

ବଣ୍ଟୁବୋଉ—କାହିଁ—ଟୋପି କେଉଁଠି ଅଛି ?

ବଣ୍ଟୁ—ଏଇ ସେ ଥାକ ଉପରେ ଅଛି ।···ହଁ, ଦେ ।

ବଣ୍ଟୁବୋଉ—ଆରେ ତୁ କୁଆଡ଼େ ଯାଉଚୁ ମତେ କହ ଭଲା ।

ବଣ୍ଟୁ—ତୁ ଦେଖିଲୁ ବୋଉ ମୁଁ କେମିତି ଦିଶୁଚି ! ପାଦରେ କଳାଆ ଜୋତା—ଦେହରେ ଡୋରିଆ ଜାମା—ମୁଣ୍ଡରେ ହରରଙ୍ଗୀର ଟୋପି !···ହଉ, ମୁଁ ଯାଉଚି । ତୁ ଯା, ଭାଇ ପିଠିରେ ଜଡ଼ାତେଲ ମାଲିସ୍ କର ।

ବଣ୍ଟୁବୋଉ—କହିବୁ ନାହିଁ କୁଆଡ଼େ ଯାଉଚୁ ?

ବଣ୍ଟୁ—ଫୁର୍-ର୍-ର୍-ଉ ।

ବଣ୍ଟୁବୋଉ—ହଇରେ ଫୁର୍-ର୍-ର୍-ଉ କଣ ? କୁଆଡ଼େ ଯାଉଚୁ ?

ବଣ୍ଟୁ—ଫୁର୍-ର୍-ର୍-ଉ । (ବାହାରକୁ ଗୁଲିଗଲା)

ବଣ୍ଟୁବୋଉ—(ବଡ଼ ପାଟିରେ) ବଣ୍ଟୁ···

ବଣ୍ଟୁ—(ଦୂରରୁ) ଫୁର୍-ର୍-ର୍-ଉ ।

ବଣ୍ଟୁବୋଉ—(ଆହୁରି ବଡ଼ ପାଟିରେ) ବଣ୍ଟୁ···

ବଣ୍ଟୁ—(ଆହୁରି ଦୂରରୁ) ଫୁର୍-ର୍-ର୍-ଉ ।

[ରଜାଙ୍କ ଉଆସର ଅଦୂରବର୍ତ୍ତୀ ରାସ୍ତା । ଜଣେ ସ୍ତ୍ରୀ ଲୋକ ମୁଣ୍ଡ ଉପରେ ତେଲ ପସରା ରଖି ଡାକ ଡାକ ଆସୁଛି ]

ସ୍ତ୍ରୀ—(ଡାକ ଡାକ) ତେଲ ନିଅ—ସୋରିଷତେଲ, ନଡ଼ିଆତେଲ, ଜଡ଼ାତେଲ···

[ବଣ୍ଟୁ ସ୍ତ୍ରୀ ଲୋକଟିର ପଛରୁ ଆସିଲା]

ବଟୁ—(ଧୀର କଣ୍ଠରେ) ଫୁର୍-ର୍-ର୍-ଉ ।

ସ୍ତ୍ରୀ—ତେଲ ନଅ—ସୋରଷ ତେଲ, ନଡ଼ିଆ ତେଲ, ଜଡ଼ା ତେଲ···

ବଟୁ—ଆଚ୍ଛା, ଜଣେ ଲୋକ ଯଦି ସୋରଷ, ନଡ଼ିଆ, ଜଡ଼ା ସବୁଯାକ ତେଲ ନବ ?

ସ୍ତ୍ରୀ—କିଏ ବା ତୁ ?

ବଟୁ—ଫୁର୍-ର୍-ର୍-ଉ ।

ସ୍ତ୍ରୀ—କ'ଣ କହିଲୁ ?

ବଟୁ—ନାଇଁ, ମୁଁ କହୁଥିଲି କ—ମୁଁ ଏ ସବୁତକ ତେଲ ତୋଠୁଁ କିଣି ନେବି ।

ସ୍ତ୍ରୀ—ସତେ ! ତୁ ଏଡ଼େ ନେଲିବାଲି ହୋଇଚୁ ? ମୋର ପାଞ୍ଚଟଙ୍କାର ତେଲ ତୁ କିଣିନବୁ ! ଗୋଟାଏ ମେଞ୍ଚଡ଼ ଟୋକା ତୁ···

ବଟୁ—ଫୁର୍-ର୍-ର୍-ଉ ।

ସ୍ତ୍ରୀ—କରେ ? ମତେ ଥଟ୍ଟା କରୁଚୁ ?

ବଟୁ—ନାଇଁ ମାଉସୀ, ମୁଁ ପଚାରୁଚି—ଯିଏ ଟଙ୍କା ଦେଲା, ସିଏ ଜିନିଷ ନେଲା । ଆଉ ସେ ଏଡ଼େ ହେଲା କି ସେଡ଼େ ହେଲା, ସେଥିରୁ ତତେ କ'ଣ ମିଳିବ ?

ସ୍ତ୍ରୀ—ମୁଁ ଏ ବେପାର କରି ପେଟ ପୋଷୁଚି । ମତେ ମିଳିବନି ଆଉ କାହାକୁ ମିଳିବରେ ? ବୁଝିଲୁ , ଯିଏ ଟଙ୍କା ଦେଲା —ସିଏ ହେଲା ଏଡ଼େ ।

ବଟୁ—ଆଉ ଯିଏ ଟଙ୍କା ଦେଇ ନ ପାରିଲା ?

ସ୍ତ୍ରୀ—ତୋର ଭଲିଆ କଥା ଚଳୁଚି—ଫୁର୍-ର୍-ର୍-ଉ ।

ବଟୁ—(ହସି ପକେଇଲା)

ସ୍ତ୍ରୀ—ହସିଲୁ କାହିଁକି ?

ବଟୁ—ତୁ ମୋର କଥା ମତେ କହି ମତେ ହସେଇଲୁ···ହଁ ମାଉସୀ, ମୁଁ ଯଦି ତୋ ତେଲ ଟଙ୍କା ଦେଇ ପାରିଲି··· (ଟଙ୍କା ବାହାର କରି ହାତରେ ଧରିଲା)

ସ୍ତ୍ରୀ—କରେ-କରେ ! କହୁ କହୁ କଣ ପାଞ୍ଚଟଙ୍କା ବାହାର କରି ହାତରେ ଧରିଲୁଣି ?

ବଣ୍ଟୁ— ଫରୁ-ର୍-ର୍-ଉ ।

ସ୍ତ୍ରୀ—ତୋ ଫୁରୁ-ର୍-ର୍-ଥାଉ । ସତ କହିଲୁ ପୁଅ, ତୁ ସବୁତକ ତେଲ କଣିବୁ ?

ବଣ୍ଟୁ—ତୁ ବିକିଲେ ମୁଁ କଣିବି ।

ସ୍ତ୍ରୀ—ପଚରୁଚୁ ପୁଣି ! ବିକିବିନି ? ଏ ବୋଝ ବୋହି ବୁଲି ବୁଲି ପାଦରୁ ଚମ ଉଠି ଯାଇଥା'ନ୍ତା ! ତୁ ଟଙ୍କା ଦବୁ—ମୁଁ ପୁଣି ତତେ ତେଲ ବିକିବିନି ?

ବଣ୍ଟୁ—ଏଇ ଟଙ୍କା ନେ । (ଟଙ୍କା ଦେଲା)

ସ୍ତ୍ରୀ—ତୋର କୋଟି ପରମାୟୁ ହଉ ପୁଅ···ହଉ ଗଲେ ଏଥର ।

ବଣ୍ଟୁ—କୁଆଡ଼େ ଯିବା ! !

ସ୍ତ୍ରୀ—ତମ ଘରକୁ । ଏ ବୋଝ ପହଞ୍ଚେଇ ଦେଇ ଆସିବି ।

ବଣ୍ଟୁ—ଏ ତେଲ କଣ ମୁଁ ଘରକୁ ନେବି ବୋଲି ତୋଠୁଁ କିଣିଛି ?

ସ୍ତ୍ରୀ—ଆଉ ?

ବଣ୍ଟୁ—ଫୁର୍-ର୍-ର୍-ଉ ।

ସ୍ତ୍ରୀ—ହେ, ତୁ ଆଉ ଏତେ ଫୁର୍-ଫୁର୍ ହ'ନା । ଘରକୁ ନବୁନାଇଁ ତ ଏ ତିନି ମାଠିଆ ତେଲ ନେଇ କଣ କରିବୁ ।

ବଣ୍ଟୁ—ଏ ମାଠିଆ ଭାଙ୍ଗି ତେଲକୁ ସବୁ ଢାଳିବି ।

ସ୍ତ୍ରୀ—କ'ଣ କହିଲୁ ! ତେଲକୁ ତଳେ ଢାଳିବୁ ? (କାନ୍ଦ) ଏ ଚଣ୍ଡାଳ ବୁଦ୍ଧି ତତେ କିଏ ଦେଲାରେ ? ମୋର ତିନି ମାଠିଆ ତେଲ ତୁ ଭୂଇଁରେ ଢାଳିଦେବୁ ?



ବଣ୍ଟୁ—କଲେ ମାଉସୀ, ଟଙ୍କା ଦେଇ ମୁଁ ତେଲ କଣିଲି । ମୋ ତେଲ ମୁଁ ଭୂଇଁରେ ଢାଳିବି କି ନିଆଁରେ ଜାଳିବି, ତୋର ସେଥିରେ କ'ଣ ଗଲା ?

ସ୍ତ୍ରୀ—ସେ କଥା ସତ ଯେ ପୁଅ···

ବଣ୍ଟୁ—ଆଉ କଥା କହୁ ନାହିଁ । ମୋ ସାଙ୍ଗରେ ତୁ ରଜା ଘର ପାଖକୁ ଚାଲ୍—ମୁଁ ଯାହା କହିବି ତୁ ସେଇଆ କରିବୁ । ବୁଝିଲୁ ?

ସ୍ତ୍ରୀ—ହଉ ଚାଲ୍ । (ଦୁହେଁ ରଜା ଉଆସ ଆଡ଼େ ଚାଲିଲେ )

[ରଜାଙ୍କ ଉଆସର ସମ୍ମୁଖ ଭାଗ । ବଣ୍ଟୁ ଓ ସ୍ତ୍ରୀ ଲୋକଟି ଆସିଲେ ]

ସ୍ତ୍ରୀ—ହେଇତ ବାପ—

ବଣ୍ଟୁ—କଣ କହୁଛୁ ?

ସ୍ତ୍ରୀ—ନାଇଁ ମୁଁ କହୁଥିଲି କି···

ବଣ୍ଟୁ—ଦେଖ ତେଲି ମାଉସୀ, ତୋର ଆଉ କିଛି କହିବାର ନାହିଁ । ଏତେବେଳଯାଏ ମୁଁ ତୋତେ ଯାହା ଶିଖେଇଛି, ତୁ ଠିକ୍ ସେଇଆ କରିବୁ । ଯଦି ଟିକିଏ ଏପାଖ ସେପାଖ ହେବ, ମୋ ଟଙ୍କା ମୁଁ ତୋଠଁୁ ଛଡ଼େଇ ନେବି ।

ସ୍ତ୍ରୀ—(ଡରିଯାଇ) ନାଇଁ ନାଇଁ ବାପା—ସୁନାଟା ମୋର—ଧନଟା ମୋର—କିଛି ଏପାଖ ସେପାଖ ହବନାଇଁ । ତୁ ଯାହା ଯାହା ମତେ ଶିଖେଇଚୁ ମୁଁ ସେଇଆ କରିବି । ···ମାଇପି ଜାତି ମୁଁ, ମନ ଛଟ ପଟ ହଉଚି । ପଦେ କଥା ମୁଁ କହିବି—

ବଣ୍ଟୁ—ହଉ କହ ।

ସ୍ତ୍ରୀ—ମୁଁ ଖାଲି କହୁଥିଲି—ତୋର ଏଇ ବାୟା ବୁଦ୍ଧି···

ବଣ୍ଟୁ—(ଖୁସିରେ) ମନେ ପକେଇ ଦେଲୁ ମାଉସୀ—ମନେ ପକେଇ ଦେଲୁ।

ସ୍ତ୍ରୀ—କ'ଣ ମନେ ପକେଇ ଦେଲି ?

ବଣ୍ଟୁ—ମତେ ଆଗେ କହ, ତୋର ପଦେ କଥା ତୁ କହି ମାରିଲୁ ତ ?

ସ୍ତ୍ରୀ—ହଁ।

ବଣ୍ଟୁ—ମୁଁ ତତେ ଯାହା ଯାହା ଶିଖେଇଚି, ତୁ ଠିକ୍ ସେୟା କରିବୁ ତ ?

ସ୍ତ୍ରୀ—ହଁ।

ବଣ୍ଟୁ—ମୁଁ ତୋତେ ଯୋଉ ଚଢ଼େଇ କଥା କହୁଥିଲି···

ସ୍ତ୍ରୀ—ହଁ, ହଁ।

ବଣ୍ଟୁ—ତୁ ମତେ ମୋ ବାୟା ବୁଦ୍ଧି କଥା କହି ଏଇଆ ମନେ ପକେଇ ଦେଲୁ ଯେ, ସେ ଚଢ଼େଇଟା ହେଉଛି—ବାୟା ଚଢ଼େଇ। ବୁଝିଲୁ ?

ସ୍ତ୍ରୀ—ହଁରେ ପୁଅ, ତୁ ମତେ ଏତେ ଢଙ୍ଗରେ ବୁଝଉଚୁ, ମୁଁ ବୁଝିବି ନେଇଁ ? ସବୁ ବୁଝିଲି।

ବଣ୍ଟୁ—ହଉ, ତୁ ଯାଆ—ଏଇ ସେଠି ସେ ଗଛତଳେ ଠିଆ ହେଇଥିବୁ।

ସ୍ତ୍ରୀ—ହଉ ଯାଉଚି। (ଅନ୍ତରାଳକୁ ଗଲା)

ବଣ୍ଟୁ—(ଏଣିକି ତେଣିକି ଗୁହାଁ, ବଡ଼ ପାଟିରେ) ନା-ନା-ନା ମୁଁ ବିକିବିନି—ଜମା ବିକିବିନି—କେବେ ହେଲେ ବିକିବିନି। ଆରେ, ମୁଁ କହୁଛି ମୁଁ ବିକିବିନି—ତେମେ କ'ଣ ଜବରଦସ୍ତି ମୋଠୁ ନେବ ! (ବଣ୍ଟୁର କଥାଶୁଣି କ୍ରମେ କ୍ରମେ ଲୋକ ଗହଳି ଲାଗିଗଲା) ହଇଓ ଘଇ—

ଜଣେଲୋକ—କ'ଣ ?

ବଣ୍ଟୁ—ମୁଁ ମଧ ମୋ ଜିନିଷ ନ ବିକିବି···

ଲୋକ—ତମର କି ଜିନିଷ ?

ବଣ୍ଟୁ—ମୁଁ ଏଇନେ ମୋ ଜିନିଷ ବିକିବି ନେଇଁ । ଯେତେବେଳେ ବିକିବି, ସେତେବେଳେ ଜାଣିବ କି ଜିନିଷ ।

ଲୋକ—ଏଇ, ରଜା ଆସିଲେଣି ।

[ରାଜା ଓ ମନ୍ତ୍ରୀ ଆସିଲେ]

ରାଜା—କ'ଣ ହେଉଛି ?

ବଣ୍ଟୁ—(ହାତ ଯୋଡ଼ି) ନାଇଁ ମହାରାଜା—ମୁଁ ବିକିବି ନାଇଁ ।

ରାଜା—କଣ ବିକିବୁ ନାଇଁ ?

ବଣ୍ଟୁ—ମୋର ଏଇ ଟୋପି—ମୁଁ ଜମା ବିକିବି ନାଇଁ ମହାରାଜ ।

ରାଜା—ଏଇ ଗଧ ଟୋପି···

ବଣ୍ଟୁ—(ଆଶ୍ଚର୍ଯ୍ୟରେ) ଗଧ ଟୋପି !

ରାଜା—ଦେଖୁଛ ମନ୍ତ୍ରୀ···

ମନ୍ତ୍ରୀ—ଦେଖୁଛି ମହାରାଜ । ଏଇ ଗଧ ଟୋପିକୁ ପୁଣି କିଣିବା ପାଇଁ ଏତେ ଗ୍ରାହକ ଯେ, ଏ ବିକିବାକୁ ନାରାଜ୍ !··· ହଇରେ ଟୋକା ?

ବଣ୍ଟୁ—ଫୁର୍-ର୍-ର୍-ଉ ।

ମନ୍ତ୍ରୀ—କ'ଣ-କଣ-କଣ ? ମତେ କଣ ଫୁର୍‌ରୁ କଲୁଣି ।

ବଣ୍ଟୁ—ଏଇଟା ଗଧ ଟୋପି ନୁହେଁ—ବୁଦ୍ଧି ଟୋପି ।

ରାଜା—ବୁଦ୍ଧି ଟୋପି ! ବୁଦ୍ଧି ଟୋପି ପୁଣି କଣ ?

ବଣ୍ଟୁ—ଏ ଟୋପିକୁ ମୁଣ୍ଡରେ ପିନ୍ଧିଲେ, ଯାହାକୁ ପାଉ ତାକୁ ବୋକା କରି ଦେଇ ହବ ।

ରାଜା—ଏଁ ! ଏ ଟୋପିର ତା ହେଲେ ଏତେ ଗୁଣ !

ବଣ୍ଟୁ—କହିବେ ତ ସାଙ୍ଗେ ସାଙ୍ଗେ ପରୀକ୍ଷା କରି ଦେଖେଇ ଦେବି । ···କହନ୍ତୁ ମହାରାଜ କାହାକୁ ବୋକା କରିବ ? ଆପଣଙ୍କୁ ?

ରାଜା—(ହଡ଼ ବଡ଼େଇ) ମତେ ! ନା-ନା-ନା, ମତେ ନୁହେଁ— ମତେ ନୁହେଁ ।

ବଣ୍ଟୁ—ଆଉ ତା' ହେଲେ···ମନ୍ତ୍ରୀ ମହାଶୟ ?

ମନ୍ତ୍ରୀ—ଏଁ ! ମୁଁ ? ମୁଁ କାହିଁକି ବୋକା ହେବ ? ନାଇଁରେ ବାବୁ ମୁଁ ନୁହେଁ-ମୁଁ ନୁହେଁ ।

ବଣ୍ଟୁ—ହଉ ହେଲା । ରାଜା ନ ହେଲେ—ମନ୍ତ୍ରୀ ନ ହେଲେ—ଏଇ ସେଠି ସେଇ ଯୋଉ ମାଉସୀଟି ଠିଆ ହେଇଚ, ତାକୁ ମୁଁ ବୋକା କରୁଛି । (ଡାକିଲା) ହେ ମାଉସୀ—

ସ୍ତ୍ରୀ—(ଭିତରୁ) କ'ଣ ?

ବଣ୍ଟୁ—ତୋ ମୁଣ୍ଡରେ କ'ଣ ମୁଣ୍ଡେଇଚୁ ?

ସ୍ତ୍ରୀ—(ଭିତରୁ) ତେଲ ପସରା ।

ବଣ୍ଟୁ—କି ତେଲ—କି ପସରା ?

ସ୍ତ୍ରୀ—(ଭିତରୁ) ଟୋକେଇ ଭିତରେ ତିନିଟା ତେଲ ଠେକି ।

ବଣ୍ଟୁ—ଠେକି ଉପରେ କ'ଣ ଘୋଡ଼େଇଚୁ ?

ସ୍ତ୍ରୀ—(ଭିତରୁ) କଦଳୀ ଖଣ୍ଡେ ।

ବଣ୍ଟୁ—ସେ କଦଳୀ ଉପରେ କ'ଣ ବସିଚି ଜାଣିଚୁ ?

ସ୍ତ୍ରୀ—(ଭିତରୁ) କ'ଣ ?

ବଣ୍ଟୁ—ଫୁର୍-ର୍-ର୍-ଉ ।

ସ୍ତ୍ରୀ—(ଭିତରୁ) କ'ଣ କହିଲୁ ?

ବଣ୍ଟୁ—ଗୋଟାଏ ବାୟା ଚଢ଼େଇ—ତୋ ପସରା ଉପରେ ବସା ବାନ୍ଧିଲାଣି ?

ସ୍ତ୍ରୀ—(ଭିତରୁ) କାଇଁ ? କୋଉଠି ବା ? କୋଉଠି ସେ ବାୟା ଚଢ଼େଇ ? (ଭିତରୁ ତେଲ ଠେକି ତଳେ ପଡ଼ି ଭାଙ୍ଗି ଯିବାର ଶବ୍ଦ) ଇଲୋ ମୋ ତେଲ ପସରା ଗଲା—

ବଣ୍ଟୁ—କ'ଣ ହେଲା ମାଉସୀ ?

ସ୍ତ୍ରୀ—(ମଞ୍ଚ ଉପରକୁ ଆସି) ବାୟା ଚଢ଼େଇ ଦେଖିବ ବୋଲି ଯେମିତି ମୁହଁ ଉପରକୁ ଟେକି ଦେଇଚି, ତିନିଟା ଯାକ ତେଲ ଠେକି ତଳେ ପଡ଼ି ଚୁନା ହେଇଗଲା । (ରାଗି) ରହରେ ଟୋକା, ତୋଠୁ ମୁଁ ମୋ ତେଲ ଅସୁଲ କରିବି ।

ବଣ୍ଟୁ—କାହିଁକି ? ମୋର କି ଦୋଷ ? ତୁ ଏଡ଼କି ବୋକା ଯେ ମୁଣ୍ଡରେ ତେଲ ପସରା ରଖି ବାୟୁ ଚଢ଼େଇ ବସା ଦେଖିବୁ ବୋଲି ମୁହଁ ଉପରକୁ ଟେକି ଗୃହୁଁଚୁ ? ଏଥିରେ ପୁଣି ମୋର ଦୋଷ ହେଇଗଲା ?···ଏଇଠି ମହାରାଜ ଅଛନ୍ତି, ମନ୍ତ୍ରୀ ଅଛନ୍ତି, ତାଙ୍କ ପାଖରେ ଗୁହାରି କର— ଦୋଷ ତୋର କି ମୋର ?

ସ୍ତ୍ରୀ—ନାଇଁ ଲୋ ମା—ଜାଣିତ ପାଞ୍ଚ ଟଙ୍କାର ତେଲ ମାଟିରେ ମିଶିଲା—ରାଜାଙ୍କ ପାଖରେ ଆଉ କି ଗୁହାରି ହେବ ? ତୋ କଥା ଶୁଣି ମୋ ବୁଦ୍ଧି ତ ଭ୍ରମ ହେଲା—ମୁଁ ବୋକା ପାଲଟି ଗଲି ।

ବଣ୍ଟୁ—ହଁ ସେଇଆ କହ । ମୋ ଦୋଷ ଦଉଚୁ କାହିଁକି ?

ସ୍ତ୍ରୀ—ନାଇଁରେ ପୁଅ, ମୋ ଭାଗ୍ୟରେ ଯାହା ଥିଲା ମୁଁ ଭୋଗିଲି । ଆଉ କାହା ଦୋଷ ଦେବି କାହିଁକି ? ମୁଁ ଯାଉଛି । (ପ୍ରସ୍ଥାନ)

ରାଜା—(ନିମ୍ନ ସ୍ୱରରେ) ଦେଖିଲତ ମନ୍ତ୍ରୀ···

ମନ୍ତ୍ରୀ—(ନିମ୍ନ ସ୍ୱର) ଦେଖିଲି ମହାରାଜ । ଟୋକାଟା ହାତେ ହାତେ ପ୍ରମାଣ ଦେଖେଇ ଦେଲା !

ରାଜା—(ନିମ୍ନ ସ୍ୱର) ମତେ ଆଉ ବୋକା କରିବାକୁ ଆସି ନାହିଁତ ?

ମନ୍ତ୍ରୀ—(ନିମ୍ନ ସ୍ୱର) ଅସମ୍ଭବ କ'ଣ ?

ରାଜା—(ନିମ୍ନ ସ୍ୱର) ମୁଁ କହୁଛି, ଟୋପିଟା ଆମେ କିଣିବା ।

ମନ୍ତ୍ରୀ—(ନିମ୍ନ ସ୍ୱର) ଠିକ୍ କଥା ପ୍ରଭୁ—କିଣି ନଅନ୍ତୁ ।

ରାଜା—ଓ ଟୋପିବାଲା, ତମ ନାଁ କ'ଣ ?

ବଣ୍ଟୁ—ମୋ ନାଁ ବଣ୍ଟୁ ।

ମନ୍ତ୍ରୀ—ବଣ୍ଟୁ, ମହାରାଜା ତୁମ ଟୋପିଟା କିଣିନେବେ ।

ବଣ୍ଟୁ—ମୋର ଏଇ ଟୋପିଟାକୁ ? ଏଇଟାକୁ ତ ଆପଣ ସେତେବେଳେ ଗଧ ଟୋପି କହୁଥିଲେ ।

ରଜା—ଗଧ ହେଉ କ  ବୁଦ୍ଧି ହେଉ ମୁଁ ସେ ଟୋପିଟାକୁ କଣିବ ।
ଦିଅ ମତେ ।

ବଣ୍ଟୁ—ଟୋପିଟା ତ ମୁଁ ବିକ ପାରିବ ନାହିଁ ।

ମନ୍ତ୍ରୀ—ସେ କଥା ହେଇ ପାରିବନି ବଣ୍ଟୁ । ମହାରଜା ଯେତେବେଳେ ଚାହୁଁଛନ୍ତି, ଟୋପିଟା ତମକୁ ଦବାକୁ ହବ—ଦିଅ ।

ବଣ୍ଟୁ—ହଉ ଆଜ୍ଞା, ନିଅନ୍ତୁ । (ଟୋପିଟି ରଜାଙ୍କୁ ଦେଲା)

ରଜା—ବେଶ୍, ମୁଁ ଟୋପି ନେଲି—ଆଉ ତମେ ଏଇ ନିଅ ଟୋପିର ଦାମ୍—ଦଶଟି ସୁନା ମୋହର ।

ବଣ୍ଟୁ—ମହାରଜାଙ୍କ ଦୟା ।

ରଜା—ଦେଖ  ବଣ୍ଟୁ, ଏଥର ମୁଁ ମୁଣ୍ଡରେ ଟୋପି ପିନ୍ଧି,  ପ୍ରଥମେ ତମକୁ ବୋକା କରିବ  ।

ବଣ୍ଟୁ—କରନ୍ତୁ ଆଜ୍ଞା ।

ରଜା—(ଟୋପି ପିନ୍ଧି)  ତୁମ ମୁଣ୍ଡ ଉପରେ  କ'ଣ ଅଛି ଜାଣ ବଣ୍ଟୁ ?

ବଣ୍ଟୁ—ଫୁର୍-ର୍-ର୍-ଉ ।

ମନ୍ତ୍ରୀ—ହେଇ ! ସେମିତି କ'ଣ କହୁଛ ? ମହାରଜା ଯାହା  କହୁଛନ୍ତି ତାର ଉତ୍ତର ଦିଅ ।

ରଜା—କୁହ ବଣ୍ଟୁ ମୁଣ୍ଡ ଉପରେ କ'ଣ  ଅଛି ?

ବଣ୍ଟୁ—ନାହିଁ ମହାରଜ ।

ରଜା—କ'ଣ ନାହିଁ ମହାରଜ ?

ବଣ୍ଟୁ—ଥିଲା ମହାରଜ—ଗଧ ଟୋପି  ଥିଲା ।   ଆଉ ମୋ ମୁଣ୍ଡ ଉପରେ ସେ  ଟୋପି   ନାହିଁ—ଅଛି  ଆପଣଙ୍କ  ମୁଣ୍ଡ ଉପରେ ।

ରଜା—ଦେଖୁଛତ ମନ୍ତ୍ରୀ !

ମନ୍ତ୍ରୀ—କଉ ବଣ୍ଟୁ, ତମ କଥାତ ଠିକ୍ ହେଲା ନାହିଁ । ରଜା ଟୋପି ପିନ୍ଧିଲେ, ତମେ ତ ବୋକା ହେଲ ନାହିଁ ?

ବଣ୍ଟୁ—ମୁଁ ଯେତେବେଳେ ବୋକା  ହେଲି ନେଇଁ,   ନିଜେ  ରଜା ବୋକା ହେଲେ ।

ରାଜା—ମାନେ ?

ବଣ୍ଟୁ—ମାନେ, ରାଜକୁମାରୀ ଆଉ ତାଙ୍କ ସହିତ ଅଧେ ରାଜ୍ୟ···

ରାଜା—ହୋଇ ପାରିବନି—ନା, ତା ହୋଇ ପାରିବନି···

ବଣ୍ଟୁ—ଆପଣ ତ ନିଜେ ସତ୍ୟ କରିଥିଲେ ।

ରାଜା—ଏତିକରେ ମୁଁ ମୋ ସତ୍ୟ ରକ୍ଷା କରି ପାରିବି ନାହିଁ । ତୁମେ ଯଦି କାଲି ଏଇ ସମୟ ଭିତରେ ମୋର ଏ ମନ୍ତ୍ରୀଙ୍କୁ ବୋକା କରି ଦେଇ ପାରିବ···

ମନ୍ତ୍ରୀ—ନାହିଁ ମହାରାଜ, ମୁଁ ବୋକା ହେବି ନାହିଁ—ମୁଁ କାହିଁକି ବୋକା ହେବି···ଏ ଟୋକା କିଛି କମ୍ ଜନ୍ତୁ ନୁହେଁ ।

ରାଜା—ଶୁଣ ବଣ୍ଟୁ, ମୁଁ ଯାହା କହୁଛି—ତୁମେ ଯଦି କାଲି ଏଇ ସମୟ ଭିତରେ ମୋର ମନ୍ତ୍ରୀଙ୍କୁ ବୋକା କରି ଦେଇ ପାରିବ, ତା ହେଲେ ମୁଁ ନିଶ୍ଚୟ ମୋ ସତ୍ୟ ରକ୍ଷା କରିବି । ଯାଅ ।

[ବଣ୍ଟୁର ଘର । ଡାକି ଡାକି ବଣ୍ଟୁ ଆସିଲା]

ବଣ୍ଟୁ—ବୋଉ-ବୋଉ······

ବୋଉ—(କାନ୍ଦି କାନ୍ଦି ଆସିଲା) କେଇ ପାହାର ଗୁବୁକ୍ ଖାଇଲୁରେ ବଣ୍ଟୁ ? ଭଇ ଭଳି ତୋ ପିଠି କ'ଣ ଫାଟି ଯାଇଛି ?

ବଣ୍ଟୁ—କ'ଣ ହେଲା—ମୋ ପିଠି ଫାଟିବ ? ମୁଁ ପୁଣି ରଜାଠୁ ଗୁବୁକ୍ ମାଡ଼ ଖାଇବି ? ଏଇ ଦେଖ (ସୁନା ମୋହର ବୋଉକୁ ଦେଲା)

ବୋଉ—ଇଏ କ'ଣ ! ଦଶଟା ସୁନା ମୋହର ! କୋଉଠୁ ଆଣିଲୁ ?

ବଣ୍ଟୁ—ଯୋଉ ଗଧ ଟୋପି କିଣିବାକୁ ମତେ ଦଶଟା ପଇସା ତୁ ଦେଉ ନଥିଲୁ—ଆଉ ଯୋଉ ରଜା ହାତରୁ ଗୁବୁକ୍ ମାଡ଼ ଖାଇ ଭଇର ପିଠି ଫାଟି ଯାଇଛି—ମୋର ସେଇ ଗଧ ଟୋପିକି ମୁଁ ସେଇ ରଜାକୁ ବିକି ଏ ଦଶଟା ସୁନା ମୋହର ଆଣିଛି ।

ବୋଉ—କ'ଣ କହୁଛୁରେ ବଣ୍ଟୁ!

ବଣ୍ଟୁ—କାଲିକି ଦେଖିବୁ ରାଜକନ୍ୟା ଆଉ ରାଜ୍ୟରୁ ଅଧେ। ଏଇନେ ଯା, ଭାଇ ପିଠିରେ ଆଉ ଜଡ଼ା ତେଲ ମାଲିସ୍ କରିବା ଦରକାର ନାହିଁ। କୁକୁଡ଼ା ସୋରୁଆ କରି ଭାଇକୁ ଖାଇବାକୁ ଦେ—ଭାଇ ଦେହରୁ ଦରଜ ଝବାକ୍ ଛୁଡ଼ିଯିବ। ...କାଲି ମୋର ସେ ମନ୍ତ୍ରୀ ସାଙ୍ଗରେ କଥାବାର୍ତ୍ତା। ...ହଁ ବୋଉ, ମେଳାରୁ ମୁଁ ଯୋଉ ନକଲି ନିଶ, ଦାଢ଼ି ଆଉ ରଙ୍ଗିନ ଚଷମା କିଣିଆଣିଥିଲି, ସେ ସବୁ ବାହାର କରି ରଖ—କାଲି ସକାଳେ ମୋର ଦରକାର।

[ପର ଦିନର ଘଟଣା। ପୂର୍ବବର୍ତ୍ତୀ ଘଟଣାର ସେଇ ସ୍ଥାନ। ଗୋଟିଏ ଅଖା ଘେନି ବଣ୍ଟୁ ଆସିଲା। ତା ମୁହଁରେ ନକଲି ନିଶ ଦାଢ଼ି ଓ ରଙ୍ଗିନ ଚଷମା। କିଛି କ୍ଷଣ ପରେ ଜଣେ ଲୋକ ଆସି ବଣ୍ଟୁକୁ ଚାହିଁ ଠିଆ ହେଲା।]

ବଣ୍ଟୁ—କଣ ଦେଖୁଛ ?

ଲୋକ—ତମକୁ।

ବଣ୍ଟୁ—କାହିଁକି ?

ଲୋକ—ତମେ ସେମିତି ଦେଖିଲା ଭଳିଆ ହେଇଚ ବୋଲି ତୁମକୁ ଦେଖୁଚି।

ବଣ୍ଟୁ—ଦେଖିବାକୁ ଭଲ ଲାଗୁଚି ?

ଲୋକ—(ଖୁସିରେ) ଓଃ! ଏମିତି ପଦାର୍ଥ ମୁଁ କେବେ କୋଉଠି ଆଗରୁ ଦେଖି ନ ଥିଲି। ଦେଖିବାକୁ ଏମିତି ଖୁସି ଲାଗୁଚି...

ବଣ୍ଟୁ—ହଉ, ତମେତ ଖୁସି ହେଲ, ଏବେ ମତେ ଟିକିଏ ଖୁସି କରାଅ...

ଲୋକ—ଲୁହ ମହାଶୟ, କେମିତି କ'ଣ ଖୁସି କରେଇବ ?

ବଟୁ—ଏଇ ଟଙ୍କାଟି ନଅ (ଟଙ୍କା ଦେଲା)

ଲୋକ—ଟଙ୍କା ନେଇ ମୁଁ ଆହୁରି ଖୁସି ହେଲି । ତମକୁ କେମିତି ଖୁସି କରେଇବ କୁହ ।

ବଟୁ—ଏଇ ଦେଖ, ମୁଁ ଏ ଅଖା ଭିତରେ ପଶିଲି (ଅଖା ଭିତରେ ପଶିଲା)

ଲୋକ—ହଁ, ତେମେ ପଶିଲ ମୁଁ ଦେଖିଲି ।

ବଟୁ—ତମେ ଏ ଡୋରରେ ଅଖା ମୁହଁକୁ ବାନ୍ଧ ।

ଲୋକ—(ବାନ୍ଧି) ହଁ ବାନ୍ଧିଲି ।

ବଟୁ—ଏଇ ଦେଖ ମୁଁ ଏଠି ଏମିତି ଗଡ଼ପଡ଼ିଲି ।

ଲୋକ—ହଁ ବାବା ଦେଖିଲି—ଅଖା ମିଶା ତମେ ଗଡ଼ ପଡ଼ିଲ ।

ବଟୁ—ଆଉ ଟିକଏ ପରେ ମନ୍ତ୍ରୀ ଏଇ ବାଟେ ଯିବେ ।

ଲୋକ—ଯାଆନ୍ତୁ ।

ବଟୁ—ମନ୍ତ୍ରୀ ଆସିବା ଯାଏ ତୁମେ ମତେ କହୁଥିବ—କିଏ ? ଏଠି ଅଖାଟା ଭିତରେ ପଶି କିଏ ଏମିତି ପଡ଼ିଛି ?

ଲୋକ—କହିବ ।

ବଟୁ—ମୁଁ ସେଇଠୁ ତୁମକୁ ଗୁପ ଗଳାରେ କହିବ—ଗ୍ରେପ୍ ।

ଲୋକ—କାହିଁକି ବାବା, ମତେ କାହିଁକି ତମେ ଗ୍ରେପ୍ କହିବ ?

ବଟୁ—ତମକୁ ଗ୍ରେପ୍ କହିଲେ ପରା ମୁଁ ଖୁସି ହେବି ।

ଲୋକ—(ଖୁସିରେ) ହଉ ହେଲା-ହେଲା, ତମେ ମତେ ଗ୍ରେପ୍ କହିବ ।

ବଟୁ—ମନ୍ତ୍ରୀ ଆସିବା ଯାଏ ଆମ ଭିତରେ ଏଇ କଥାବାର୍ତ୍ତା ଚାଲିଥିବ ।

ଲୋକ—ହଁ ଚାଲିଥିବ ।

ବଣ୍ଟୁ—ମନ୍ତ୍ରୀ ଯେମିତି ଆଉ କଣ୍ଟୁ ଜାଣିବେନ ।

ଲୋକ—ନା ଜାଣିବେନ । ଏଇ ମନ୍ତ୍ରୀ ଆସୁଛନ୍ତି ।

ବଣ୍ଟୁ—ବେଶ୍, ଚଞ୍ଚଳ ଆରମ୍ଭ କର ।

ଲୋକ—କିଏ ଏଠି ଅଖା୍ଟା ଭିତରେ ପଶି ଏମିତି ପଡ଼ିଚ ?

ବଣ୍ଟୁ—ଗ୍ରେପ୍ ।

ଲୋକ—ଆରେ ତୁ କିଏ ?

ବଣ୍ଟୁ—ଗ୍ରେପ୍ ।

ଲୋକ—ଆରେ ମୁଁ ତତେ ଏତେ କଥା ପଚାରୁଛି, ତୋର ଖାଲି ଗ୍ରେପ୍ ଗ୍ରେପ୍ ଲାଗିଚି ?

ବଣ୍ଟୁ—ଗ୍ରେପ୍ । (ମନ୍ତ୍ରୀ ଆସିଲେ)

ମନ୍ତ୍ରୀ—କ'ଣ ହେଇଚି ?

ଲୋକ—ଦେଖନ୍ତୁ ଆଜ୍ଞା, ଏ ଅଖା ଭିତରେ କିଏ ଗୋଟାଏ ପଶିଚି । ଆଉ ପଚାରିଲେ କହୁଚି—ଗ୍ରେପ୍ ।

ମନ୍ତ୍ରୀ—ହେ, ଅଖା ଭିତରେ କିଏ ତୁ ?

ବଣ୍ଟୁ—ଗ୍ରେପ୍ ।

ଲୋକ—ହେ ଅଖା, ନିଜେ ମନ୍ତ୍ରୀ ପର ପଚାରୁଛନ୍ତି, ତୁ ଗ୍ରେପ୍ ଗ୍ରେପ୍ କ'ଣ ହଉଚୁ ?

ବଣ୍ଟୁ—(ଚୁପାଗଳାରେ) ଆପଣ ଆଜ୍ଞା ମନ୍ତ୍ରୀ ମହାଶୟ ?

ମନ୍ତ୍ରୀ—ହଁ । ମୁଁ ଏ ରାଜ୍ୟର ମନ୍ତ୍ରୀ । ତୁ କିଏ ? ଆଉ ଏ ଅଖା ଭିତରେ କାହିଁକି ପଶିଚୁ ?

ବଣ୍ଟୁ—(ଡର ଡର) ଆଜ୍ଞା ସିଏ ଇଆଡ଼କୁ ଆସୁଚି—ଆପଣଙ୍କ ପାଖକୁ ।

ମନ୍ତ୍ରୀ—(ଡରିଯାଇ) କିଏ ସେ ?

ବଣ୍ଟୁ—ଆଜ୍ଞା ସେଇ—ସିଏ କାଲି ଆପଣଙ୍କୁ ବୋକା କରିବ ବୋଲି କହିଥିଲା, ସେଇ ଆସୁଛି । ଆଉ ସେ ବାଟରେ ଯାହାକୁ ଦେଖୁଚି, ତାକୁ ବୋକା ନ କରି ଛାଡ଼ୁନି ।

ମନ୍ତ୍ରୀ—(ଆହୁରି ଡରିଯାଇ) ସେଇ ତା' ହେଲେ ଆସୁଚି ! ରଜାଙ୍କୁ ଯେତେବେଳେ ବୋକା କଲୁ, ମତେ ସେ କ'ଣ ଛାଡ଼ିବ ? ମୁଁ ଏବେ କରିବି କ'ଣ ?

ବଣ୍ଟୁ—ଆଜ୍ଞା ପାଟି କରନ୍ତୁନ, ଆସି ପହଞ୍ଚି ଯିବ ।

ମନ୍ତ୍ରୀ—କି ହଇରାଣରେ ରଜା ମତେ ପକାଇଲେ । ରଜ ସଭାରେ ଥିଲି—ରଜା ମତେ ଏଠିକି ପଠେଇଲେ—ଆଉ ଟିକିଏ ପରେ ରଜା ନିଜେ ଏଠିକି ଆସିବେ । ମୁଁ କି ବୁଦ୍ଧି କରିବି ! ଆଜ୍ଞା ତୁ କିଏ ? ତୁ ଏ ଅଖା ଭିତରେ କାହିଁକି ପଶିଚୁ ?

ବଣ୍ଟୁ—ଏଇଟା ଗୋଟାଏ ବୁଦ୍ଧି ଅଖା । ଏ ଅଖା ଭିତରେ ଯିଏ ପଶିବ, ଦୁନିଆର ସବୁଠୁ ବୁଦ୍ଧିଆ ଲୋକ ବି ତାକୁ ବୋକା କରି ପାରିବ ନାହିଁ । ଓଲଟା ତା ପାଖରେ ନିଜେ ବୋକା ହେଇଯିବ ।

ମନ୍ତ୍ରୀ—ତେବେ ତୁ ଚଞ୍ଚଳ ସେ ଅଖା ଭିତରୁ ବାହାରିଲୁ, ମୁଁ ପଶେ···

ବଣ୍ଟୁ—ଆଜ୍ଞା ମୁଁ ପୁଣି ମିଛଟାରେ ବୋକା ହେବି !

ମନ୍ତ୍ରୀ—ଓଃ, ତୁ ଆଉ ଡେରି କରନା—ତୁ ଯାହା ମାଗିବୁ ମୁଁ ଦେବି । କେତେ ଟଙ୍କା ନବୁ ? ପାଆଁଶ ଟଙ୍କା ?

ବଣ୍ଟୁ—ଟଙ୍କା କଥା ଆଉ କାହିଁକି କହୁଛନ୍ତି ଆଜ୍ଞା, ଟଙ୍କାତ ମତେ ଦେବେ···ଆପଣ ଏତେ ବଡ଼ ରାଜ୍ୟର ମନ୍ତ୍ରୀ, ଆପଣ ରକ୍ଷା ପାଇଯା'ନ୍ତୁ । ···ଅଖା ଫିଟାନ୍ତୁ ଆଜ୍ଞା ମୁଁ ବାହାରିବି ।
(ମନ୍ତ୍ରୀ ଅଖା ଫିଟାଇଲେ । ବଣ୍ଟୁ ବାହାରିଲା)

ମନ୍ତ୍ରୀ—ବାବ୍ବା ! କେତେ ବଡ଼ ବଡ଼ ନିଶ ଦାଢ଼ି ତମର···

ବଣ୍ଟୁ—ସେଇଥି ପାଇଁ ଆଜ୍ଞା ବେଶି ଡର—ନିଶ ଦାଢି ଦେଖି ଆଗ ବୋକା କରିଦବ । ପଶନ୍ତୁ ଆଜ୍ଞା, ଅଖା ଭିତରେ ଚଞ୍ଚଳ ପଶନ୍ତୁ—ଏଇ ଆସି ଗଲା ନା କଣ !

ମନ୍ତ୍ରୀ—ହଉ, ମୁଁ ପଶିଲି, ତୁ ମୁହଁଟା ବାନ୍ଧଦେ ।

ବଣ୍ଟୁ—(ଅଖା ମୁହଁ ବାନ୍ଧି) ବାନ୍ଧିଲି ଆଜ୍ଞା !

ମନ୍ତ୍ରୀ—ମତେ ଏଇଠି ଜଗିକରି ଠିଆ ହ' ।

ବଣ୍ଟୁ—ଆପଣଙ୍କ ପାଖେ ପାଖେ ରହିଲି ଆଜ୍ଞା—(କଥା କହିବା ସାଙ୍ଗେ ସାଙ୍ଗେ ବଣ୍ଟୁ ଅଖା ସୁଦ୍ଧା ମନ୍ତ୍ରୀଙ୍କୁ ଟେକି ନିଜ କାନ୍ଧ ଉପରେ ରଖିଲା )

ମନ୍ତ୍ରୀ—କରେ—କରେ ? ମତେ ଏ ଅଖାଟା ଭିତରେ ପୂରାଇ ଶୂନ୍ୟେ ଶୂନ୍ୟେ ଟେକି ନେଉଛୁ କୁଆଡ଼େ ?

ବଣ୍ଟୁ—ବୋକା ଅଖା ଭିତରେ ଲୋକ ପଶିଲେ ଫଳ କଅଣ ହୁଏ ସେଇ କଥା ଜାଣିବା ପାଇଁ ।...ଏଇତ, ମହାରଜ ଏଣିକି ଆସୁଛନ୍ତି ।
(ରଜା ଆସିଲେ, ବଣ୍ଟୁ ନକଲି ନିଶ, ଦାଢ଼ି ଓ ଚଷମା ସବୁ କାଢ଼ି ପକାଇଲା )

ରଜା—କିଏ ? ବଣ୍ଟୁ ?

ବଣ୍ଟୁ—ପ୍ରଣାମ ଆଜ୍ଞା (ଅଖାକୁ ତଳେ ଥୋଇଲା ।)

ରଜା—ଏ ଅଖା ଭିତରେ କ'ଣ ଅଛି ?

ବଣ୍ଟୁ—ଫୁର୍-ର୍-ର୍-ଉ ।

ମନ୍ତ୍ରୀ—ଆଜ୍ଞା ମହାରଜ, ଅଖା ଭିତରେ ମୁଁ ।

ରଜା—କିଏ ? ମନ୍ତ୍ରୀ ?

ମନ୍ତ୍ରୀ—ହଁ ଆଜ୍ଞା—ଆପଣଙ୍କ ହତଭାଗା ମନ୍ତ୍ରୀ ଏ ଅଖା ଭିତରେ । ଅଖା ଖୋଲିବାକୁ ଆଦେଶ ଦିଅନ୍ତୁ ।

ରଜା—ବଣ୍ଟୁ, ଅଖା ଖୋଲ । (ବଣ୍ଟୁ ଅଖା ଖୋଲିଲା, ମନ୍ତ୍ରୀ ବାହାରିଲେ)

ମନ୍ତ୍ରୀ—କିଏ ବଣ୍ଟୁ ! ତୁମେ ଏ କାମ କରିଚ । ତୁମ ନିଶ, ଦାଢ଼ି ?

ବଣ୍ଟୁ——ନିଶ, ଦାଢ଼ି ! ଫୁର୍-ର୍-ର୍-ଉ ।

ରଜା—ମନ୍ତ୍ରୀ, ମନ୍ତ୍ରୀ ତମେ ବି ବୋକା ହେଲ !!

ମନ୍ତ୍ରୀ—ଦେଖୁଛନ୍ତ ତ ମହାରାଜ !

ରାଜା—(ଜୋର୍‌ରେ ହସି ହସି) ବଣ୍ଟୁ ତମକୁ ବ ବୋକା କର ଗ୍ଭଡ଼ଲ !

ମନ୍ତ୍ରୀ—ଆପଣ ହସୁଛନ୍ତ ଗ୍ଭମୁ—ଆପଣ ବ ତ ବୋକା ହେଇ-ଥିଲେ !

ରାଜା—ଓ ! ମୁଁ ବୋକା ହୋଇଥିଲ ପର ? ତା ହେଲେ ତୁମେ ହସ (ଦୁହେଁ ହସିଲେ)

ବଣ୍ଟୁ—ଆଜ୍ଞା ଆପଣଙ୍କ ସତ୍ୟ ?

ରାଜା—ଏଥିରେ ଆଉ ସନ୍ଦେହ ଅଛୁ ? ନିଶ୍ଚୟ ମୁଁ ମୋ ସତ୍ୟ ରକ୍ଷା କରବ । ତମେ ଆସ, ଉଆସକୁ ଆସ ।···ଆସ ମନ୍ତ୍ରୀ ।



# ଚରିତ୍ର

ଧର୍ମାରାମ—ବୟସ ୩୦ ବର୍ଷ

ସୁନା—ବୟସ ୧୨ ବର୍ଷ

ରୁପା—ବୟସ ୧୦ ବର୍ଷ

# ଛେନା ପୋଡ଼ପିଠା

(ପଲ୍ଲୀ ଅଞ୍ଚଳରେ ଏକ ମଧ୍ୟବିତ୍ତ ଗୃହସ୍ଥଙ୍କ ଗୃହର ଏକ ବଡ଼ କୋଠରୀ । କୋଠରୀର ଗୋଟିଏ ପାଖରେ ଧର୍ମାରାମ ତଳେ ବସି ଖଣ୍ଡେ ଅଙ୍ଗାର ସାହାଯ୍ୟରେ ଚଟାଣରେ ହିସାବ କରୁଛନ୍ତି । ଧର୍ମା ଟିକଏ ମୋଟା ଲୋକ ହୋଇଥିବାରୁ ତଳେ ବସି ନଇଁ ପଡ଼ି ହିସାବ କରିବା ତାଙ୍କ ପକ୍ଷରେ ନିଶ୍ଚୟ ଅସୁବିଧା ହେଉଛି । ତଥାପି ସେ ହାରି ନ ଯାଇ ତାଙ୍କ କାମରେ ଲାଗି ପଡ଼ିଛନ୍ତି ।.........କିଛି ସମୟ ପରେ ପ୍ରାୟ ନିଃଶବ୍ଦରେ ସେ ଘରକୁ ଆସିଲେ ସୁନା ଓ ରୂପା । ସେମାନେ ଦୁଇ ଭଉଣୀ । ଧର୍ମା ହେଉଛନ୍ତି ସେମାନଙ୍କର ଭଣୋଇ । ଧର୍ମାକୁ ଏପରି ଅବସ୍ଥାରେ ଦେଖି, ସେମାନେ ଟିକଏ ଦୁରେଇ ଠିଆ ହୋଇ ଧୀର କଣ୍ଠରେ ନିଜ ନିଜ ଭିତରେ କଥାବାର୍ତ୍ତା ହେଲେ )

ସୁନା—ତୁ ମତେ କାହିଁକି ଏଠିକି ଡାକି ଆଣିଲୁ ?

ରୂପା—ଧର୍ମା ଭାଇ ପରା କହିଲେ- ଯା ରୂପା, ତୋ ସୁନା ଅପାକୁ ଡାକି ଆଣେ ।

ସୁନା—ଧର୍ମା ଭାଇଙ୍କର ଏଠି କଣ ଚାଲିଛି ?

ରୂପା—ହିସାବ ।

ସୁନା—କି ହିସାବ ?

ରୂପା—କ'ଣ ତାଙ୍କର ସେ ନ' ପଇସାର ହିସାବ ଚାଲିଛି ।

ସୁନା—ଏମିତିକା କାର୍ପଣି କରୁଥିବା ଲୋକ ମୁଁ କୋଉଠି ଦେଖି ନାହିଁ ପରା ! ନଅଟା ପଇସା ପାଇଁ କାଲିଠୁ ଗଣି ହଉଚନ୍ତି ।

ଧର୍ମା—(ହିସାବ କରିବା ଅବସ୍ଥାରେ ମୁହଁ ନ ଟେକି) କିଏ କୋଉଠି କ'ଣ କହୁଛୁ ?

ସୁନା—ମୁଁ ଏଠି ମୋ କଥା କହୁଛି ।

ଧର୍ମା—କ'ଣ ତୋ କଥା ?

ସୁନା—ତେମେ ମତେ କାହିଁକି ଡକେଇ ପଠେଇଲ ?

ଧର୍ମା—ରହ, କହୁଛି ।

ସୁନା—ତମର ଏଠି ଏ' କ'ଣ ଚାଲିଛି ?

ଧର୍ମା—ଦେଖୁନୁ ପରା, ହିସାବଟା ମିଳୁନି ।

ସୁନା—କ'ଣ ସେଇ ନ' ପଇସାର ହିସାବ ?

ଧର୍ମା—(ସିଧା ହେଇ ବସି) ହଁ ଲୋ ସୁନା, ମଣିଷ ମୁଣ୍ଡ ଖରାପ ହୋଇ ଗଲାଣି ।

ସୁନା—ହବନେଇଁ ! ତମର କେତେ କେତେ ଟଙ୍କାର ମହାଜନୀ—ଏତେ ଟଙ୍କା ଭିତରୁ ନଅଟା ପଇସା ଖୋଜି ବାହାର କରିବା କ'ଣ ସହଜ କଥା ?

ଧର୍ମା—ଆଲୋ ଇଏ କଣ ମହଜନୀ ଟଙ୍କା ହିସାବ ? ମହାଜନୀ କାରବାର ହେଇଥିଲେ ତ ଦେହ ଧରି ରହି ହୁଅନ୍ତା । ଜାଣନ୍ତି ପାଞ୍ଚଶ' ତିନଶ' ଲାଭ ହେଲା—ସେଥିରୁ ପାଞ୍ଚତିନି ପଇସା ଏପାଖ ସେପାଖ ହେଇଗଲା—

ସୁନା—ଇଏ ତୁମର କୋଉ ହିସାବ ?

ଧର୍ମା—ଆମ ଘରୁ ତମ ଘରକୁ ଆସିବା ଯାଏ ଯୋଉ ବାଟ ଖର୍ଚ୍ଚ ହେଲା, ସେଇଥିରେ ଏ ନ' ପଇସା ଗୋଳମାଳ ହେଇ ଯାଇଛି ।... ଏହକେ ତ ଟ୍ରେନ୍ ମଟରରେ ଏତେ-ଗୁଡ଼ାରେ ପଇସା ବୃଥା ଖର୍ଚ୍ଚ କରି ଆସିଲି— ତା' ଉପରେ ଏ ପଇସା କେଉଁଟା ପୁଣି ବାଏଁ ବାଏଁ ଉଡ଼ିଗଲା ।

ସୁନା—ହେ ଧର୍ମା ଭାଇ, ଏ କଥା କହୁଚ ତେମେ ? ତେମେ ଜ୍ୱାଇଁ କୁଣିଆ—ଶଶୁର ଘରକୁ ଆସିଲ । ଏଥିରେ ତମର ପଇସା ବୃଥା ଖର୍ଚ୍ଚ ହେଇଗଲା ?

ଧର୍ମା—ଛୁ ବୁଝୁନ୍ନୁ ସୁନା—ତମ ଘରକୁ ଆସିଲି ବୋଲି କ'ଣ ମୋର ଦୁଃଖ ହେଉଛି ? ହେଲେ ଯୋଉ କାମ ମୁଁ ନ ଆସିଥିଲେ ହେଇ ପାରିଥାନ୍ତା, ସେଥିପାଇଁ ଏ ବୃଥା ଖର୍ଚ୍ଚ କାହିଁକି ? ଏ ସବୁ ମୂଳରେ ହଉଛି ତୋ' ଅପା । ଏକା ଜିଦ୍ ଧରି ବସିଲେ— ସୁନା ରୂପା ଦୁହିଁଙ୍କୁ ଯାଇ ନେଇ ଆସ— ଭଦ୍ରଖ କାଳୀ ମେଲଣ ଦେଖିବେ । କରେ ବାବୁ ! ଏଥିପାଇଁ ମୁଠା ମୁଠା ପଇସା ବାଟଖର୍ଚ୍ଚ କରି ଜଣେ ଲୋକ ଆସିବା ଦରକାର କଣ ? ଚିଠିଖଣ୍ଡେ ଲେଖି ଦେଇଥିଲେ କ'ଣ ତମେ ଦହେଁ ଯାଇ ନ ଥା'ନ୍ତ ?

ସୁନା—କଣ ହେଲା ? ଚିଠି ଲେଖିଥିଲେ ଆମେ ଚାଲି ଯାଇଥାନ୍ତୁ ?

ଧର୍ମା—କାହିଁକି ? ଟ୍ରେନ୍ ମଟର ବାଟତ ପଡ଼ିଛି । ଅସୁବିଧା ଟା କ'ଣ ?

ସୁନା—ହଁ ! ଆମ ଗରଜ ସରୁ ନ ଥିଲା—ଆମେ ଏକା ଏକା ତମ ଘରକୁ ଯାଉଥିଲୁ !!

ଧର୍ମା—ଛୁଡ଼ ! ଅର୍ଥ ଶ୍ରାଦ୍ଧ କରି ତ ମୁଁ ଆସିଲିଣି— କ'ଣ ଆଉ ସେଥିରୁ ମିଳୁଛି । ତା' ଉପରେ ପୁଣି ଏ ନ' ପଇସା !

ସୁନା—ସତରେ ଧର୍ମା ଭାଇ, ଏ ନ' ପଇସାର ହିସାବ ମିଳୁ ନାହିଁ ?

ଧର୍ମା—ନାଇଁ ପରା—କେତେ ହିସାବ କଲିଣି ।

ସୁନା—ହେଲେ ହିସାବ କରିବାକୁ କ'ଣ କାଗଜ-ପେନସିଲ ନାଇଁ ଯେ, ଘର ସାରା ଅଙ୍ଗାର ଘଷି ଘଷି କଳା ବାଲୁ ବାଲୁ କଲଣି ? ହଇଲେ ରୂପା, ଧର୍ମା ଭାଇଙ୍କୁ କାଗଜ ପେନ୍‌ସିଲ ଦେଇ ନ ଥିଲୁ ?

ରୂପା—ଦେଇ ଥିଲି ତ । ଏଇ ଧରା କାଗଜ ପେନ୍‌ସିଲ ଏଇଠି ଥୁଆ ହେଇଛି ।

ଧର୍ମା—ସହଜେ ତ ନ' ପଇସାର ହିସାବ ମିଳୁନାହିଁ, ତା' ଉପରେ ପୁଣି କାଗଜ ପେନ୍‌ସିଲ ଖର୍ଚ୍ଚ କରି ପଇସା ନଷ୍ଟ କରିବ ? ମୋ ଦେଇ ଏ କାମ ହେଇ ପାରିବ ନାହିଁ !!

ସୁନା—ଧନ୍ୟ ତମେ ଧମା ଭାଇ !! ତେମେ ଯେମିତି ପଇସାକୁ ବାନ୍ଧ ରଖିଚ, ପଇସା ସେମିତି ତମକୁ ବାନ୍ଧ ରଖିଚୁ ! ହଉ, ଆଲେ ରୂପା ଯିବା । ସିଏ ତାଙ୍କର ଅଙ୍ଗାର ଘଷି ହଉଥା'ନ୍ତୁ ।

ଧମା—ଆଲେ ତୁ ଯାଉଚୁ କୁଆଡ଼େ ? ମୁଁ ତୋତେ ଡାକଥିଲି ପରା ।

ସୁନା—କାହିଁକି ଡାକଥିଲ ? ତମ ହିସାବତ ଏ ଯାଏଁ ସରିଲା ନାଇଁ ।

ଧମା—ହିସାବ ଥାଉ । ବେଳ ହେଇ ଗଲାଣି, ଯିବ ନାଇଁ ?

ସୁନା—ଗାଡ଼ିତ ଯାଇ କାହିଁ କେତେବେଳେ । ଏତିକ ବେଳୁ ଯାଇ କ'ଣ କରିବା

ଧମା—ଏଠୁ ଷ୍ଟେସନ ତ ପୁଣି ତିନ କଲୋମିଟରର ବାଟ ।

ସୁନା—ହଉ ତିନ କଲୋମିଟର । ସାଇକ୍ଲ ରିକ୍‌ସାରେ ଯିବାକୁ ତ ଅଧ ଘଣ୍ଟାଏ ସମୟ ବି ଲାଗିବ ନାଇଁ ।

ଧମା—(ଛେପ ଢୋକି) ସାଇକ୍ଲ ରିକ୍‌ସାରେ ଯିବା ?

ସୁନା—ହଁ, ଏଠୁ ତ ସମସ୍ତେ ଷ୍ଟେସନ ସାଇକ୍ଲ ରିକସାରେ ଯା'ନ୍ତି— ଆମେ ସାଇକ୍ଲ ରିକ୍‌ସାରେ ଯିବା ।

ଧମା—କାଇଁକି ? ଚାଲିକରି ଗଲେ ହ'ନ୍ତା ନାଇଁ !

ସୁନା—କ'ଣ ହେଲା ! ତିନ କଲୋମିଟର ବାଟ ଆମେ ଚାଲି ଚାଲି ଯିବୁ ?

ଧମା—ହଁ । ବୃଥା ଏତେ ଗୁଡ଼ାଏ ପଇସା ରିକସାବାଲାଙ୍କୁ ଖୁଆଇ ଲାଭ କ'ଣ କହିଲୁ ? ଚାଲିକରି ଯିବା ଭଲ ।

ସୁନା—ହଇଲୋ ରୂପା ତୁ ଚାଲି କରି ଯିବୁ ?

ରୂପା—ତୁ ?

ସୁନା—ମୋ କଥା ଛାଡ଼ । ମୋ ଗୋଡ଼ରେ ତ କାଲିଠୁ ଗୋଟାଏ ଆଲପିନ୍ ପଶିଯାଇଚି ଯେ ପାଦ ଉଠେଇ ହଉନି । ମୁଁ

ଯାଇ ପାରିବନି । ମିବୁ ଯଦି ତୁ ଯାଆ । (ରୂପାକୁ ଆଖି ଠାରି ଦେଲା)

ରୂପା—ମୁଁ ଆଉ ଯିବି କେମିତି ? ମୋ ଅଣ୍ଟାରେ କାଲଠୁ ଗୋଟାଏ ଝିକା ପଶିଛି ଯେ, ମୁଁ ଅଣ୍ଟା ସଳଖି ଠିଆ ହେଇ ପାରୁନି...

ସୁନା—ତା' ହେଲେ ଧମା ଭାଇ, ତେମେ ଏକା ଫେରି ଯାଅ । ଅପାକୁ କହିଦବ ଆମେ କେହି ଯାଇ ପାରିବୁ ନାହିଁ ।

ଧମା—ଏକଥା ଯାଇ ମୁଁ ଅପାକୁ କହିଲେ ଅପା ମତେ ଆଉ ଏ ଦୁନିଆରେ ରଖିବ ?

ସୁନା—ଆଉ ଆମକୁ ଚଲେଇ ଚଲେଇ ନେଲେ ତମେ ଏ ଦୁନିଆରେ ରହିବ—ନାଇଁ !

ଧମା—ମୁଁ ଜାଣେ ତୋ' ପାଦରେ ଆଲପିନ୍ ପଶିନି କି ତା' ଅଣ୍ଟାରେ ଝିକା ପଶିନି । ମିଛଟାରେ ତମେ ଦିହେଁ ମତେ ବିଇଷଣରେ ପକାଉଛ । ଏଠୁ ଷ୍ଟେସନ ରିକ୍ସା ଭଡ଼ା କେତେ କହିଲୁ ?

ସୁନା—ମୋଟେ ତିନିଟଙ୍କା ।

ଧମା—ତିନିଟଙ୍କା ! ତୋ ଆଖିରେ ପୁଣି "ମୋଟେ" !!

ରୂପା—ଖଣ୍ଡେ ରିକ୍ସାକୁ ସିନା ତିନିଟଙ୍କା—ଦି' ଖଣ୍ଡକୁତ ଛ' ଟଙ୍କା ।

ଧମା—କାଇଁକି ? କାଇଁକି ? ରିକ୍ସାରେ ଯଦି ଯିବା ଖଣ୍ଡେ ରିକ୍ସାରେ କ'ଣ ଯାଇ ହବ ନାଇଁ ଯେ, ଦି' ଖଣ୍ଡ ରିକ୍ସା ଦରକାର ହବ ?

ସୁନା—ଆମେ ତିନିହେଁ ଖଣ୍ଡେ ରିକ୍ସାରେ ଯିବା !

ଧମା—ହଁ ମୁଁ ବସିବି, ତୁ ବସିବୁ, ତୋ କୋଳରେ ରୂପା ବସି ଯିବ ।

ରୂପା—(ଜୋରରେ ହସି ଉଠିଲା)

ଧମା—କ'ଣ ଗୋଟାଏ ହସ କଥା ମୁଁ କହିଲି ଯେ ତୁ ହସୁଚୁ ?

ସୁନା—ହସିବ ନାହିଁ ! ଏମିତିକା କଥା କହିଲେ କିଏ ନ ହସିବ କହିଲ ? ଗୋଟାଏ ରିକ୍ସାରେ ଏକା ତମକୁ ନଅଣ୍ଟ... ଆମେ ପୁଣି ବସିବୁ କୋଉଠି ? ...ମୁଁ ଦେଖିଚି, ରିକ୍ସାରୁ ପଡ଼ି ଯିବାକୁ ତମର ଏତେ ଡର ଯେ, ତମେ ଠିକ୍ ରିକ୍ସା ମଝିରେ ବସିବ—ଦୁ' ହାତକୁ ଫରକଟା କରି ଦି ପାଖରେ ଭରା ଦେଇଥିବ । ଆମେ ବସିବୁ କୋଉଠି ?

ଧମା—ତା' ହେଲେ ରିକ୍ସା ବାଲାକୁ ପଇସା ଖୁଆଇବା ତୋ' ଇଚ୍ଛା ? ପୁଣି ତିନଟଙ୍କା ନୁହେଁ—ଛ' ଟଙ୍କା ।

ସୁନା—ରିକ୍ସା ବାଲାତ ରିକ୍ସା ଟାଣିବ—ହକ୍ ପରିଶ୍ରମ କରି ପଇସା ନବ । ତାକୁ ତମେ ଖୁଆଇବ କ'ଣ ?

ଧମା—ଶୁଣ୍ ! ମୁଁ କହୁଚି କି ଏମିତି ଅକାରଣରେ ପଇସା ଖର୍ଚ୍ଚ ନ କରି ଏଥିରେ ତ ନିଜ ପେଟକୁ ଖାଇ ପାରନ୍ତ ?

ସୁନା—କିଏ ଖାଇବ ? ଆମେ ?

ଧମା—ହଁ ।

ସୁନା—ଖୁଆଇବ କିଏ ? ତେମେ ?

ଧମା—ମୁଁ ? ହଁ...ମୁଁ...ମାନେ...ଇଏ...

ସୁନା—ଜାଣିଚ ମ ? ଭଣେଇ ହେଇଚ ଯେ, ଖାଲି ହାତରେ ଏଠିକି ଆସିଲ । ଗୋଟାଏ ପକେଟ ଲଜେନସ କି ମିଠା ଆମ ପାଇଁ ଆଣିଲ ନାହିଁ ? ...ତେମେ ପୁଣି ଆମକୁ ଖୁଆଇବ ?

ଧମା—ଏ କଥାକୁ ମୋର ଆଉ ବଳ କ'ଣ ?

ସୁନା—ଶୁଣ ଧମା ଭାଇ । ଗୋଟାଏ କଥାରେ ଆମେ ଚାଲି ଚାଲି ଷ୍ଟେସନ ଯିବାକୁ ରାଜି !

ଧମା—କଣ ? କଣ ? ଟିକିଏ ଶୁଣେ !

ସୁନା—ରିକ୍ସାରେ ଯାଇଥିଲେ ତମର ଛ' ଟଙ୍କା ଖର୍ଚ୍ଚ ହୋଇ ଥା'ନ୍ତା ତ ?

ଧନୀ—ହଁ ।

ସୁନା—ଟଙ୍କାଏ ତମ ପାଖରେ ଥାଉ । ବାକି ପାଞ୍ଚ ଟଙ୍କାରେ ହରିପୁର ବଜାରରେ ତମେ ଯଦି ଆମକୁ ମିଠା କିଣି ଖୁଆଇବ, ତେବେ ଆମେ ତମ ସାଙ୍ଗରେ ଗୁଲିଗୁଲି ଷ୍ଟେସନ ଯିବୁ ।

ଧନୀ—ଖୁଆଇବାକୁ କିଏ ମୁଁ ତମକୁ ମନା କରୁଛ ? ହେଲେ ଏ ହରିପୁର ବଜାରରେ କ'ଣ ଖାଇବ ? ଭଦ୍ରଖ ଯାଉଛ— ଗୁଲି ସେଠି ଯେତେ ଇଚ୍ଛା ଯାହା ଖାଇ ପାରିବ ।

ସୁନା—ସେଠି ତମର ଛେନାଝୋ ମିଳେ !

ଧନୀ—କ'ଣ କହିଲୁ ? ଛେନାଝୋ ମିଳେ ? ଭଦ୍ରଖ ପାକୁଆ ଲଡ଼ୁ— ମିହିଦାନା ।

ରୂପା—ଛେନାପୋଡ଼ ପିଠା ମିଳେ—ଛେନା ପୋଡ଼ପିଠା ?

ଧନୀ—କ'ଣ କହିଲୁ ?

ସୁନା—ଛେନା ପୋଡ଼ପିଠା ମିଳେ ତମର ସେଠି ?

ଧନୀ—ନାଁ।ଝୋଡ ନୂଆ ଶୁଣୁଛ ।

ସୁନା—ହଁ, ସେଇ ଛେନା ପୋଡ଼ପିଠା ଆମକୁ ଖୁଆଇଲେ ଆମେ ଗୁଲି ଗୁଲି ଯିବୁ । କ'ଣ ଲୋ ରୂପା ତୁ ଯିବୁ ନାହିଁ ?

ରୂପା—ଯିବି ନାହିଁ ପୁଣି ? ଛେନା ପୋଡ଼ପିଠା ମିଳିଲେ ରିକସାରେ ନ ଯାଇ ଗୁଲି କରି ଯିବି—ଦଉଡ଼ ଦଉଡ଼ ଯିବି ।

ଧନୀ—ହଁ, ଛେନା ପୋଡ଼ପିଠା ଖାଇଲେ ତୋ ଅଣ୍ଟାରୁ ଯେମିତି ରିକା ଖସିଯିବ—ସେମିତିକା କଥା କହୁଛୁ ।

ସୁନା—ତମେ ଦବ କି ନାହିଁ କୁହ ହୋ ? ଏତେ କଥାରୁ ମିଳୁଛି କ'ଣ ?

ଧନୀ—ମୋ ନାକରେ ତ ତମେ ଦଉଡ଼ା ପୂରେଇ ଟାଣୁଛ, ନ ଦେଇ ମୋର ବାଟ ଅଛି ? ହେଲେ କହି ଦଉଛି, ସେଇ ପାଞ୍ଚଟଙ୍କା—ତା'ଠୁଁ ଛଦାମେ ବି ବେଶି ନୁହେଁ ।

ସୁନା—ଆମେ ବି ବେଶି ମାଗୁନୁ—ସେଇ ପାଞ୍ଚୋଟି ଟଙ୍କା ।

ଧର୍ମା—ହଉ ତେବେ ଯାଆ—ବେଳ ହୋଇ ଯାଉଛି, ଜାମା ପଟା ପିନ୍ଧ ।

ସୁନା—ଯାଉଚୁ । ଆ'ଲୋ ରୂପା (ଦୁହେଁ ଭିତରକୁ ଗଲେ)

ଧର୍ମା—(ମନକୁ ମନ) ନଅ ପଇସାର ହିସାବତ ମିଳୁନ । ତା' ଉପରେ ପୁଣି ପାଞ୍ଚଟଙ୍କା ମୋଠୁ ଖସେଇବାର ଉପାୟ ଖୋଜୁଛ, ନା ? ଚାଲ ତେମେ ମୋ ସାଙ୍ଗରେ, କେମିତି ଛେନା ପୋଡ଼ପିଠା ଖାଇବ—ଦେଖିବ ଚାଲ ।

[ହରିପୁର ବଜାର । ଦୋକାନ ସବୁର କେତୋଟି ଦୋକାନୀ କେବଳ ଦୋକାନ ସାମ୍ନାରେ ବସିଥିବାର ମଞ୍ଚରେ ଦେଖାଯାଉଛି । ସବୁ ଦୋକାନ ଅନ୍ତରାଳରେ ରହିଛି ! କୌଣସି ଦୋକାନ ମଞ୍ଚରେ ଦେଖା-ଯାଉନି···ଦୃଶ୍ୟ ଆରମ୍ଭରେ ଦେଖାଗଲା ଧର୍ମା ଓ ସୁନା ଆଉ ରୂପା ଏ ଦୋକାନ ସେ ଦୋକାନ ବୁଲୁଚନ୍ତି ।]

ସୁନା—ଆଉ କେତେ ବୁଲିବା ମ ଧର୍ମା ଭାଇ ? ପାଞ୍ଚଟା ଦୋକାନ ବୁଲିଲୁଣି—କୋଉଠି ତମ ମନ ମାନୁନାହିଁ ।

ଧର୍ମା—ଆଲୋ ଦାମିକା ଜିନିଷ—ଖଣ୍ଡି ପଚିଶ ପଇସା । ଏ ଦୋକାନ ସେ ଦୋକାନ ବୁଲି ନ ଦେଖିଲେ ଠକି ଯିବା ନାହିଁ ?

ରୂପା—ଏଇ ଅଟା, ଏ ଦୋକାନରେ ଅଛି ।

ସୁନା—ହଁ ଧର୍ମାଭାଇ । ଏ ଦୋକାନରେ ହୋଇ ଗୋଟାଏ ପୂରା ପୋଡ଼ ପିଠା କଟା ହୋଇ ଥୁଆ ହୋଇଛି । ଖଣ୍ଡେ ବି ବିକ୍ରୀ ହୋଇନି ।

ଧର୍ମା—ଆସିଲୁ ଦେଖେଁ । (ଦୋକାନୀକୁ) ହଇଓ ଭାଇ ।

୧ମ ଦୋକାନୀ—କ'ଣ ଆଜ୍ଞା ? କୁହନ୍ତୁ କ'ଣ ଦରକାର ?

ଧନୀ—ଛେନା ପୋଡ଼ପିଠା ଅଛି ?

୧ମ ଦୋକାନୀ—କ'ଣ କହିଲେ ଆଜ୍ଞା ?

ଧନୀ—ଛେନା ପୋଡ଼ପିଠା ଅଛି ?

୧ମ ଦୋକାନୀ—ଆଜ୍ଞା ଦୟା କରି ଦୋକାନ ଭିତରକୁ ଆସନ୍ତୁ ।

ରୂପା—ଚାଲ ଧନୀଭାଇ, ଭିତରକୁ ଚାଲ ।

ଧନୀ—ତୁ' ରହନା—

୧ମ ଦୋକାନୀ—କଣ ହେଲା ଆଜ୍ଞା ?

ଧନୀ—ମୁଁ ଯାହା ପଚାରୁଛି ମତେ କୁହ—ଛେନା ପୋଡ଼ପିଠା ଅଛି ?

୧ମ ଦୋକାନୀ—ଭିତରକୁ ଆସିବେ ନାହିଁ ଆଜ୍ଞା ?

ଧନୀ—ବାହାରେ ଛିଡ଼ା ହେଲେ ଦୋଷଟା କ'ଣ ?

୧ମ ଦୋକାନୀ—ଆପଣ ଆଜ୍ଞା ଗରାଖ ଈଶ୍ୱର—ଆମର ପୋଷଣଦାତା । ଆପଣଙ୍କୁ ଆମେ ମୁଣ୍ଡ ଉପରେ ବସେଇବାର କଥା । ହେଲେ ଆଜ୍ଞା ଆପଣଙ୍କୁ ହାତ ଯୋଡ଼ି କହୁଛି—ଏ ପ୍ରଶ୍ନ ଆପଣ ମତେ ଆଉ କେବେ ପଚାରିବେ ନାହିଁ ।

ଧନୀ—କ'ଣ ଛେନା ପୋଡ଼ପିଠା ଅଛି ନା ନାହିଁ—ଏଇ ପ୍ରଶ୍ନ ?

୧ମ ଦୋକାନୀ—ହଁ ଆଜ୍ଞା, ଆଉ କେବେ ପଚାରିବେ ନାହିଁ ।

ଧନୀ—କାହିଁକି ବାବୁ ? ମୋର ଦୋଷ ?

୧ମ ଦୋକାନୀ—କହିଲି ପରା—ଆପଣ ଗରାଖ ଈଶ୍ୱର ! ଆପଣଙ୍କୁ ଦୋଷ ଦେବି ମୁଁ ! ହେଲେ ଏ ପ୍ରଶ୍ନ ପଚାରି ମତେ ଆଉ କଷ୍ଟ ଦେବେନି । ଆପଣ ଜାଣନ୍ତି ? ମୋ ସାତ ପୁରୁଷ ଆଗରୁ ଆଉ ତିନି ପୁରୁଷ—କୋଉଠୁ ଆସିଥିଲେ ଜାଣନ୍ତି ? ଜାଣନ୍ତି—ଆପଣ ?

ଧନୀ—କୋଉଠୁ ?

୧ମ ଦୋକାନୀ—ସେଇ—ସେଇ ଯୋଉଠି ଛେନା ପୋଡ଼ପିଠାର ଜନ୍ମ-ସେଇ ନୟାଗଡ଼ ଇଲାକା ! ସେଇଠୁ ଆମେ ଆସିଛୁ । ସେ କାହିଁ କେତେବର୍ଷ ତଳର କଥା । କହିଲି ପରା

ମାତ ଘୁରୁଷ ଆଗର, ଦ' ଘୁରୁଷ ତଳର କଥା ।
ଘରଗୁଡ଼ ଯେତେବେଳ ସେମାନେ ଏଠିକି ଆସିଲେ,
ସାଙ୍ଗରେ ଆଉ କିଛି ନ ଥିଲ—ଥିଲ ଖାଲି—

ଧର୍ମ—ଛେନା ପୋଡ଼ପିଠା ?

୧ମ ଦୋକାନୀ—(ହସି) ସେଇଆ ନୁହେଁ ଆଉ କ'ଣ ? ଆଜ୍ଞା ଏକଥା
ଜାଣିଥାନ୍ତୁ ଯେ, ଛେନା ପୋଡ଼ ପିଠାରୁ ଆମର ଜନ୍ମ ।
ଏ ହରିପୁର ବଜାରରେ ଛେନା ପୋଡ଼ପିଠା ଜାଣେ
କିଏ ? କରେ କିଏ ? ସେ ବିଦ୍ୟା ଆଉ କାହାକୁ ଜଣା
ଅଛି ? ଆଉ ମତେ ଆଜ୍ଞା ଯଦି ପଚାରିବେ, ମୋ
ଦୋକାନରେ ଛେନା ପୋଡ଼ପିଠା ଅଛି କି ନାହିଁ,
ମତେ ସେଇଟା ଆଜ୍ଞା ବାଧିବନି ? ହଉ କୁହନ୍ତୁ ଆଜ୍ଞା
କେତେ ଦେବି ? କିଲୋ ?

ଧର୍ମ—କିନିଷ ଭଲତ ?

୧ମ ଦୋକାନୀ—ପୁଣି ସେହି କଥା ପଚାରିଲେ ? ଛାଡ଼ନ୍ତୁ, କେତେ ଦେବି
କହିଲେ । ଆପଣଙ୍କ ଚେହେରା ଦେଖି ମୁଁ ବୁଝି ପାରୁଛି
ଆପଣ କି ଜାତିର ଗରାଖ । କୁହନ୍ତୁ କେତେ
ଦେବି ?

ଧର୍ମ—ଆଗେ ଟିକିଏ କିନିଷଟା ଦେଖେ ।

୧ମ ଦୋକାନୀ—ଓ, ଦେଖିବେ ? ବେଶ୍ ଦେଖନ୍ତୁ । ଦେଖନ୍ତୁ ।
(ଏମାନେ ଝୁଙ୍କି ପଡ଼ି ଦେଖିଲେ)

ଧୂନା—ସତେ ମ ଧର୍ମ ଭାଇ, ଭାରି ବଢ଼ିଆ ହୋଇଛି, ଏକଦମ
ତଟକା ଘିଅ ଜରଜର ।

ରୂପା—ବାସ୍ନାଟା ବି ଭାରି ବଢ଼ିଆ ।

ଧର୍ମ—ବେଶ୍ ନରମତ ? (ଧର୍ମ ହାତ ମାରିବାକୁ ଯାଉଥିଲେ)

୧ମ ଦୋକାନୀ—ଆ-ହା-ହା-ହାତ ମାରିବେ ନାହିଁ ।

ଧର୍ମ—ହାତ ମାରିବି ନାହିଁ ?

୧ମ ଦୋକାନୀ—କାହିଁକି ହାତ ମାରିବେ କୁହନ୍ତୁ ତ ?

ଧର୍ମ—ନରମ କି ନୁହେଁ ଦେଖିବା ପାଇଁ ।

୧ମ ଦୋକାନୀ—ଓ, ଏଇଆ ! ଲହୁଣୀ ଖାଇଥିବେ ତ ଆଜ୍ଞା, ଲହୁଣୀ ! ଲହୁଣୀଠୁ ବଳି ନରମ ଜିନିଷ ଆଉ ଏ ଦୁନିଆରେ କ'ଣ ବା ଅଛି ? ମୁଁ ବାଜି ମାରି କହୁଛି ଆଜ୍ଞା, ମୋ ଛେନା ପୋଡ଼ପିଠା ଲହୁଣୀଠୁ ବେଶୀ ନରମ ।

ଧନୀ—ତମ ଏ ବଜାରେ ଲହୁଣୀ ମିଳେ ?

୧ମ ଦୋକାନୀ—ଏଇ ପରି ଆଗରେ ସଦେଇ ବେହେରାର ଦହି ଲହୁଣୀ ଦୋକାନ । ଠିକ୍ ସେଇ ଲହୁଣୀ ପରି ନରମ ମୋ ଛେନା ପୋଡ଼ପିଠା । ବୁଝିଲେ ?

ଧନୀ—ଏ ସୁନା ରୁପା, ଆସ ।

ସୁନ-ରୁପା—କୁଆଡ଼େ ?

ଧନୀ—ଆସ ମୋ ସାଥିରେ କହୁଛି (ଏମାନେ ଅନ୍ୟ ଦଗକୁ ଗଲେ)

୧ମ ଦୋକାନୀ—କ'ଣ ଆଜ୍ଞା ଚାଲି ଯାଉଛନ୍ତି ଯେ ? ଶୁଣନ୍ତୁ ଆଜ୍ଞା, ଶୁଣନ୍ତୁ । ବାଃ ! ବେଶ୍ ଗରାଖ ତ ! ତିନି ତିନିଜଣ ଗରାଖ ତେବେ— ତିନି ପଇସା ଦାମର ସଉଦା ନ ନେଇ ଚାଲିଗଲ !!

ସୁନା—ଏ କଣ ଧନୀଭାଇ ଚାଲି ଆସିଲ କାହିଁକି ?

ଧନୀ—ତୁ' ଆ ମୋ ସାଥିରେ — କହୁଚି ।

ସୁନା—ଆଉ କୁଆଡ଼େ ଯିବା ?

ଧନୀ—ଲହୁଣୀ ଦୋକାନକୁ ।

ସୁନା—କାହିଁକି ?

ଧନୀ—ଶୁଣିଲୁନି, ସେ ବାଜିମାରି କହୁଚି ଯେ ତା' ଛେନା ପୋଡ଼-ପିଠା ସଦେଇ ବେହେରା ଦୋକାନ ଲହୁଣୀ ପରି ନରମ । ତା' ହେଲେ ଆଗେ ଦେଖାଯାଉ, ସଦେଇ ବେହେରା ଦୋକାନର ଲହୁଣୀଟା କେମିତି ! (ଦୋକାନୀକୁ) ହଇଏ ଭାଇ, ଏଇଟା ସଦେଇ ବେହେରା ଦୋକାନ ?

୨ୟ ଦୋକାନୀ—କ'ଣ କହିଲେ ?

ଧନୀ—ଏଇଟା ସଦେଇ ବେହେରାଙ୍କ ଦୋକାନ ?

୨ୟ ଦୋକାନୀ—ବେହେରାରୁତ ଆପଣ ଭଦ୍ରଲୋକଙ୍କ ପରି ଦେଖା ଯାଉଚନ୍ତି—କ'ଣ ଆଉ ମୁଁ କହିବି !

ଧର୍ମ—ମୋର ଦୋଷଟା କୋଉଠି, ଜାଣି ପାରିବି କି ?

୨ୟ ଦୋକାନୀ—ଆପଣତ ନିଶ୍ଚେ ବଡ଼ ସହର ବଜାରକୁ ଯାଉଥିବେ ?

ଧର୍ମ—ହଁ, ଯାଏ ।

୨ୟ ଦୋକାନୀ—ସେଠି ବାଟ ଭୁଲିଗଲେ କାହାକୁ ପଚାରିବେ ?

ଧର୍ମ—ପୋଲିସକୁ ।

୨ୟ ଦୋକାନୀ—ହେଲେ ଖୋଦ୍ ପୁଲିସକୁ ଯଦି ଯାଇ ଆପଣ ପଚାରିବେ—ତେମେ କ'ଣ ପୁଲିସ ? କଥାଟା ତା ହେଲେ କେତେ ଅସୁନ୍ଦର ହବ କହିଲେ ?

ଧର୍ମ—ଓ, ଏମିତି କଥା ?

୨ୟ ଦୋକାନୀ—ଏ ହରିପୁର ସହରର ଜନ୍ମଦିନୁଁ 'ଆମ ବଂଶର ଏ ବଢ଼ିଆ—ଲହୁଣୀ ଦୋକାନ ଏଠି ଚାଲି ଆସିଛି । ଆଉ ଆପଣ ଆସି ମତେ ପଚାରୁଚନ୍ତି ଯେ ଏଇଟା କ'ଣ ସଦେଇ ବେହେରାଙ୍କ ଦୋକାନ ?? ମତ କହୁଚ ଆଜ୍ଞା ପ୍ରାଣକୁ ମୋର ଭାରି ବାଧିଲା । ହଉ, କୁହନ୍ତୁ ଆଜ୍ଞା, କ'ଣ ଦେବି ? ଦହି ନା ଲହୁଣୀ ?

ଧର୍ମ—ଲହୁଣୀ । ଭଲ ଲହୁଣୀ ଅଛି ?

୨ୟ ଦୋକାନୀ—ଆପଣ ନୂଆ ଲୋକ—ସଦେଇ ସାହୁ ଦୋକାନ ଗୁଣ ଜାଣନ୍ତି ନାହିଁ ବୋଲି ଏକଥା ପଚାରିଲେ । ···ହଉ ଦେଖନ୍ତୁ ଏଣେ ? କ'ଣ ଦେଖୁଚନ୍ତି ? ଇଏତ ଲହୁଣୀ ନୁହେଁ—ଅମୃତ । ଧୂଆ ଘିଣି ଚେଳ ପରି ଏକାବେଳକେ ସଫା—ଛଳ-ଛଳ ! ଅନେଇଲେ ମୁହଁ ଦିଶିବ । କୁହନ୍ତୁ କେତେ ଦେବି ?

ଧର୍ମ—ଏ ବଜାରରେ କ'ଣ ଖୁବ୍ ଭଲ ଧୂଆ ଘିଣି ଚେଳ ମିଳେ ?

୨ୟ ଦୋକାନୀ—ଏଇ ସେ କଦମ୍ବ ଗଛ ମୂଳେ ଶାମ ସାହୁ ତା' ହେଲେ ଦୋକାନ କରିଚ କାହିଁକି ? ତା' ବେଉସା ହେଲା···ଧୂଆ ଘିଣି ଚେଳ । ହଁ କୁହନ୍ତୁ ଆଜ୍ଞା ଲହୁଣୀ କେତେ ଦେବି ?

ଧମା—ଏ ସୁନା-ରୂପା-ଆମ ।

୨ୟ ଦୋକାନୀ—ଏ କ'ଣ ଆଜ୍ଞା ? ଗୁଳ ଯାଉଚନ୍ତି ! ବାଃ ବେଶ୍ ଗରାଖତ ! ଜିନଷ ଦେଖି ପସନ୍ଦ କରି ଗୁଳ ଯାଉଚନ୍ତି !

ସୁନା—କୁଆଡ଼େ ଯିବା ଧନୀ ଭାଇ ? ଶାମ ସାହୁ ଦୋକାନକୁ ?

ଧମା—ହଁ ।

ସୁନା—ତେମେ କ'ଣ ଆମ ସାଥିରେ ଥଟ୍ଟା ଖେଳୁଛ ଧନୀ ଭାଇ ? ଗୁଡ଼ିଆ ଦୋକାନରୁ ଆସିଲେ ଲହୁଣୀ ଦୋକାନକୁ—ପୁଣି ଲହୁଣୀ ଦୋକାନରୁ ଯାଉଚ ରାଶି ତେଲ ଦୋକାନକୁ—

ରୂପା—ରାଶି ତେଲ କଣ ହେବ ଧମା ଭାଇ ? ମୁଁ ରାଶି ତେଲ ଖାଇବ ନାହିଁ ।

ଧମା—ଆରେ ରାଶି ତେଲ ଖାଉଚ କଏ ? ଲହୁଣୀଟା ପଦ୍ଧ ରାଶି ତେଲ ପରି ସଫା ଆଉ ଚକ୍‌କଣ···ତେବେ ଦେଖାଯାଉ··· ରାଶି ତେଲଟା କମିତ ? ···ଏଇ ! ଏଇତ କଦମ୍ବ ଗଛ । (ଦୋକାନୀକୁ) ତମେ ନିଶ୍ଚୟ ଶାମ ସାହୁ ?

୩ୟ ଦୋକାନୀ—ଆପଣ ନିଶ୍ଚୟ ଧୂଆ ରାଶି ତେଲ କିଣିବାକୁ ଆସିଛନ୍ତି ?

ଧମା—ବାଃ ! ମନକଥା ଜାଣିଲ ପରି କଥାଟା କହି ଦେଲ ?

୩ୟ ଦୋକାନୀ—ଆପଣ ନୂଆ ଗରାଖ ହେଇ ଯେତେବେଳେ ମତେ ଚିହ୍ନି ମୋ ଦୋକାନକୁ ଆସିଚନ୍ତି, ମୁଁ ଆପଣଙ୍କ ମନକଥା ଜାଣି ପାରିବି ନାହିଁ ?

ଧମା—ଭଲ ଧୂଆ ରାଶି ତେଲ ଅଛି ?

୩ୟ ଦୋକାନୀ—ଆଜ୍ଞା, ମୋ' ଦୋକାନରେ ପଦ୍ଧ ସଫା ଧୂଆ ରାଶି ତେଲ ମିଳିବ ନାହିଁ, ତା ହେଲେ ଆମର ଏ ବଜାର ସେ ମୁଣ୍ଡରେ ଯୋଉ ଶୁଆପକ୍ଷୀ ଝରଣାଟା ଅଛି—ଦେଖିଚନ୍ତି ତ ଶୁଆପକ୍ଷୀ ଝରଣାଟା ?

ଧନୀ—ହଁ ଦେଖିଚି । କ'ଣ ହେଲା ?

୩ୟ ଦୋକାନୀ—ସେଇଟା ବାରମାସୀ ଝରଣା । ହେଲେ, ମୋ' ଦୋକାନରେ ପଦ୍ଧ ଭଲ ଧୂଆ ରାଶି ତେଲ ନ ଥିବ,

ତେବେ ସେ ଝରଣାରେ ଟୋପାଏ ବି ପାଣି ରହିବ ନାହିଁ—ସବୁ ଶୁଖିଯିବ ?

ଧନୀ—କ'ଣ—କ'ଣ କହିଲେ କଣ୍ଟୁ ମୁଁ ବୁଝି ପାରିଲି ନାହିଁ !

୩ୟ ଦୋକାନୀ—ଆଜ୍ଞା ବୁଝିବେ ଆଉ କ'ଣ ? ଏଇ ଦେଖନ୍ତୁ ଆଜ୍ଞା—ଏ ତେଲ ନାଁ ହେଲା ନାମଜାଦା ଶାମ ସାହୁ ଧୂଆ ଘଣି ତେଲ—ଶୁଆ ପକ୍ଷୀ ଝରଣାର ପାଣି ପରି ସଫା, ନିର୍ମଳ; ବୁଝିଲେ—ଏଇଆ ମୁଁ କହୁଥିଲି । କୁହନ୍ତୁ ଆଜ୍ଞା କେତେ ଦେବି ।

ସୁନା—ତା' ହେଲେ ଆମ ଧନୀ ଭାଇ ଯିବା—

ଧନୀ—କୁଆଡ଼େ ?

ସୁନା—ଶୁଆପକ୍ଷୀ ଝରଣାକୁ ।

ଧନୀ—(ହୋ ହୋ ହେଇ ହସି) ଓ, ଠିକ୍ କହିଚୁ । ଚାଲ ।

୩ୟ ଦୋକାନୀ—କାହିଁକି ଆଜ୍ଞା ? ଝରଣାକୁ ଯିବେ କାହିଁକି ?

ଧନୀ—ସେଇଟା ଆମର ଯିବା ବାଟ...ଆମେ ଯିବୁ ନାହିଁ ?

୩ୟ ଦୋକାନୀ—ତେଲ ଆଜ୍ଞା ! ତେଲ ନେବେ ନାହିଁ ? ନେଇ ଯାଆନ୍ତୁ ଆଜ୍ଞା—ଶସ୍ତାରେ ଦେବି ! ବାଃ ! ବଢ଼ିଆ ଲୋକ ତ ?

ସୁନା—ତା ହେଲେ ଧନୀ ଭାଇ, ଏଇ ଛେନା ପୋଡ଼ପିଠା ଆମକୁ ଖାଇଲେ, ନା ?

ଧନୀ—ତମ ବଜାରରେ ଗୋଟାକରୁ ପାଞ୍ଚଟା ଦୋକାନ ବୁଝିଲି ପରେ ଜଣା ହେଲା ଯେ ଛେନା ପୋଡ଼ପିଠା ହେଲା ଶୁଆପକ୍ଷୀ ଝରଣା ପାଣି ସାଙ୍ଗେ ସମାନ । ତା' ହେଲେ ବୃଥା ପଇସା ଖର୍ଚ୍ଚ କରି ଛେନା ପୋଡ଼ପିଠା କିଣିବା କାହିଁକି କହ ?

ସୁନା—ଅଧେ ବାଟ ତ ଆସିଲୁଣି—ଆଉ ଆମ ଘରକୁ ଫେରିହେବ ନାହିଁ । ତମ ଘରକୁ ଚାଲ, ସେଠି ଅପା ଥିବ—ତେମେ ଥିବ ଆଉ ଆମେ ଥିବୁ...

ଧନୀ—ମାନିଲି, ଆମ ଘରେ ଆମେ ସମସ୍ତେ ଥିବା । ତା'ପରେ କ'ଣ ହବ ସେ କଥା ଟିକେ ମୁଁ ତୋ ମୁହଁରୁ ଶୁଣେ—

ସୁନା—ମୋ ମୁହଁରୁ କିଛି ଶୁଣିବା ଦରକାର ନାହିଁ । ତମେ ଯାହା ଶୁଣିବାର କଥା, ସେ କଥା ଅପା ତୁମକୁ ଶୁଣେଇବ ।

ଧର୍ମ—ଏଇଟା କ'ଣ ଠିକ୍ ହଉଚି ସୁନା ? ତୁ ଏସବୁ କଥା ତୋ ଅପାକୁ କହିବୁ ?

ସୁନା—ମୁଁ ମୋ ମନରୁ କିଛି କହିବି ନାଇଁ । ମୁଁ ଜାଣେ, ଆମେ ଯେମିତି ଯାଇ ତମଘରେ ପହଞ୍ଚିବୁ, ଅପା ଯାଙ୍ଗେ ସାଙ୍ଗେ ଆମକୁ ଖାଇବାକୁ ଡାକିବ ।

ଧର୍ମ—ଇଏତ ଅତି ଉତ୍ତମ କଥା ।

ସୁନା—ମୁଁ ସେମିତି ଅପାକୁ ଆଉ ଗୋଟିଏ ଉତ୍ତମ କଥା କହିବି—କହିବି, ନାଇଁଲେ ଅପା ଆମେ ଏବେ କିଛି ଖାଇବୁନି । ଧର୍ମ ଭାଇ ଆମକୁ ହରିପୁର ବଜାରରେ ପାଞ୍ଚଟଙ୍କାର ଛେନା ପୋଡ଼ପିଠା ଖାଇବାକୁ ଦେଇଛନ୍ତି—ଆମ ପେଟ ଭର୍ତ୍ତି ।

ଧର୍ମ—ଦେଖ୍ ସୁନା, ତୁ ଏ କଥା ଅପାକୁ କହିଲେ, ଅପା ତୋର ଗର୍ଜିଉଠି ମତେ କହିବ—ଆଜିକାଲି ମହଙ୍ଗା ବଜାରରେ ପାଞ୍ଚଟଙ୍କାର ଛେନା ପୋଡ଼ପିଠାତ ଗୋଟେ ପାଞ୍ଚ ବର୍ଷର ପିଲା ପେଟକୁ ଅଣ୍ଟିବନି । ତେବେ ମୋ ଭଉଣୀ ଦି'ଟାକୁ ଭିକ ମାଗିଲା ଭଳି ପାଞ୍ଚଟଙ୍କାର ପିଠା ଖୁଆଇଛ, ତମ ପାଖରେ ଆଉ ଟଙ୍କା ନ ଥିଲା ?

ସୁନା—(ହସି) ଏ କଥା ଜାଣିଚଟି ? ତା' ହେଲେ ଆସ ସେଇ ଛେନା ପୋଡ଼ପିଠା ଦୋକାନକୁ ଯିବା ।

ରୂପା—ଅପା ମତେ ଭାରି ଶୋଷ କଲାଣି ।

ଧର୍ମ—(ଖୁସିରେ) ଶୋଷ କଲାଣିଟି ? ମୁଁ ଜାଣେ ପରା ଏ ଶୁଆ ପକ୍ଷୀ ଝରଣା ପାଣି କଥା ଶୁଣିଲେ—ମଣିଷକୁ ଭୋକ ନ ହେଉ, ଖାଲି ଶୋଷ ହୁଏ···ଶୁଣିଲୁ ରୂପା—ଏଇ ଆଗରେ ତ ଝରଣା, ସେଠି ତୁ ପାଣି ପିଇବୁ—ମୁଁ ପିଇବ—ଆଉ ସୁନା, ଆ—ତୁ ବି ମୁଣ୍ଡାଏ ପିଇଦେବୁ ।

ସୁନା—ନାଇଁ, ମୁଁ ପାଣି ପିଇବ ନାହିଁ । ତମେ ଦୁହେଁ ଯାଇ ପିଅ ।

(ଧନ୍ନା ଓ ରୂପା ଝରଣା କୂଳକୁ ଗଲେ)

ଧନ୍ନା—(ଅନ୍ତରାଳରୁ ବଡ଼ ପାଟିରେ) ଆଲୋ ସୁନା···ସୁନା···

ସୁନା—କଣ ହେଲା ? କାହିଁକି ଗୋଟାଏ ଏମିତି ପାଟି କରୁଚ ।

ଧନ୍ନା—(ଅନ୍ତରାଳରୁ) ତୁ ଟିକଏ ଏଠିକି ଆସିଲୁ ।

ସୁନା—ମୁଁ ଯାଇ ପାରିବି ନାହିଁ । ତେମେ ଆସ । (ଧନ୍ନା ଓ ରୂପା ଆସିଲେ)

ଧନ୍ନା—(ବିକଳରେ) ଆଲୋ ସୁନା, ଯାଉଟା ଗୋଟିକିଆ ଟଙ୍କା ଅଣ୍ଟାରେ ଖୋସିଥିଲି । ଝରଣା ପାଣିରେ ଖସି ପଡ଼ିଲା । ପଥର ସନ୍ଧିରେ ମୋର ଏ ମୋଟା ହାତ ପଶୁ ନାହିଁ—ମୁଁ ଖୋଜି ପାଉ ନାହିଁ । ତୋର ସରୁ ହାତ, ତୁ ଚାଲ ଟିକଏ ଖୋଜି ଦବୁ ।

ସୁନା—(ଖୁସିରେ) ଶୁଣ ଧନ୍ନା ଭାଇ । ତମେ ନିଜେ କହୁଚ ଯେ ହରିପୁର ବଜାର ଛେନା ପୋଡ଼ପିଠା ହଉଚ ଶୁଆପକ୍ଷୀ ଝରଣା ପାଣି ସାଙ୍ଗେ ସମାନ । ତେମେ ପୋଡ଼ପିଠା ନ ଖାଇ ପାଣି ପିଇଲ । ରୂପା ପିନା ଆଞ୍ଜୁଳାଏ ଦ ଆଞ୍ଜୁଳା ପିଇଥିବ—ତେମେ ତ ଏକାବେଳକେ ଢୋକେ-ପିଇ-ଥିବ—ଢୋକେ । ସେଇ ପାଣି ପଇସା ଶୁଆପକ୍ଷୀ ଝରଣା ତମଠୁଁ ଅସୁଲ କଲା ବୁଝିଲ । ଆଉ ମୁହିଁ ନ ଶୁଖାଇ ଆସ—ବସ୍ ଛାଡ଼ି ଦେଲାଣି ।



# ଚରିତ୍ର

ଶ୍ୟାମ—ଯୁବକ

ରମୂ—ବୟସ ୧୨/୧୩ ବର୍ଷ

କମୂ—ବୟସ ୧୧ ବର୍ଷ

ଟୁକି—ବୟସ ୯ ବର୍ଷ (ଝିଅ)

# ବଣ ଜଙ୍ଗଲର ବନ୍ଧୁ

[ଏକ ସହର । ସମୟ—ରାତ୍ରି ପ୍ରାୟ ନ'ଟା । ସ୍ଥାନ—ଏକ ସର୍କସ ପଡ଼ିଆ । ସର୍କସ ଖେଳ ଶେଷ ହବାର ଦୃଶ୍ୟ । ମଞ୍ଚ ଉପରକୁ ଶାମ, ରମୁ ଓ ଟୁକ ଆସିଲେ ]

ଶାମ—[ଟିକଏ ବ୍ୟସ୍ତ ହୋଇ ବଡ଼ ପାଟିରେ] ଆରେ ରମୁ-ନମୁ···

ରମୁ—କ'ଣ ଶାମ ମାମୁଁ—ଆମେ ପରା ଏଇଠି ଅଛୁ ତମ ପାଖରେ ।

ଶାମ—ହଁ । ଏଇଠି ଅଛ ଯେ···ରମୁ—ଟୁକ ତେମେ ଦିହେଁ ତ ଅଛ—ନମୁ କାହିଁ ଗଲା ?

ଟୁକ—ନମୁ ଭାଇତ ଏଇନେ ଏଇଠି ଥିଲା ।

ଶାମ—ଏଇଠି ଥିଲାତ ଗଲା କୁଆଡ଼େ ? ଆଚ୍ଛା ଟୋକା ! ଏ ଲୋକ ଗହଳ ଭିତରେ ମୁଁ ଏବେ ତାକୁ କୋଉଠି ଖୋଜିବି ?

ଟୁକ—ଦେଖୁଚୁ ରମୁ ଭାଇ, କେଡ଼େ ବଡ଼ ତମ୍ବୁ !

ରମୁ—ଓଲଟାଏ କଲେ ! ସର୍କସ ତମ୍ବୁପରା ! କେତେଲୋକ ବସିଥିଲେ ଦେଖିଲୁ ନାହିଁ ? ହଜାର ହଜାର ! ···ଶାମ ମାମୁ କେତେ ହଜାର ଲୋକ ବସିଥିବେ କହିଲ ?

ଶାମ—ଆରେ ରହ—ବକ୍ ବକ୍ ହଅ ନାହିଁ । ସେ ଟୋକାଟା ପାଇଁ ମୋ ମୁଣ୍ଡ ଘୂରେଇ ଗଲାଣି । ଏ ଭଳିଆ ପିଲାଙ୍କୁ ନେଇ କେବେ ଏମିତି ଲୋକ ଗହଳ ଭିତରକୁ ଆସିବ ନାହିଁ । ଆଲୋ ଟୁକ, ସର୍କସ ତ ଭାଙ୍ଗିଲା—ଆମେ ସମସ୍ତେ ତମ୍ବୁ ଭିତରୁ ସାଙ୍ଗ ହୋଇ ବାହାରିଲେ—

ଟୁକ—ହଁ ପରା । ସେ ପାଖରେ ଭିଡ଼ ହେଲା ବୋଲି ଆମେ ଏଠି ଅଟକି ଗଲୁ । ନମୁ ଭାଇବି ସେତେବେଳେ ଏଇଠି ଥିଲା ।

ଶାମ—ତୁ ଦେଖିଚୁ ?

ଟୁକ—ହଁ । ଚିନାବାଦାମ ପୁଡ଼ିଆଟା ମୋ ହାତକୁ ବଢ଼େଇ ଦେଇ କହିଲା—ନେ, ମୁଁ ଆଜି ଖାଇବି ନାହିଁ, ତୁ ଖା' । (ରମୁକୁ) ଏଇ ଦେଖରେ ରମୁଭାଇ, ଦେଖ୍ ସେଇ ଜୋକର୍‌ଟା ସେମିତିଆ ହରରଙ୍ଗୀ ପୋଷାକ ପିନ୍ଧି ସେଠି ବୁଲୁଚି ।

ଶାମ—କି ବଦ୍‌ମାସ ପିଲା ! ଗୋଟାଏ କଥା କହୁ କହୁ ଆଉ ଗୋଟାଏ କଥାରେ ଉଠିଲାଣି ! ତେବେ ଚିନାବାଦାମ ଦେଇ ନମୁ କୁଆଡ଼େ ଗଲା ?

ଟୁକ—ମୁଁ କେମିତି ଜାଣିବି ? ସିଏତ ଏଇଠି ଥିଲା—କୁଆଡ଼େ ଚାଲିଗଲା ।

ଶାମ—ମୁଁ ଏବେ କରେ କ'ଣ ? ଯୁଆଁଙ୍କୁ ଜଗି ବସିବି ନା—ତାକୁ ଖୋଜି ବୁଲିବି ?

ରମୁ—(ହସି ଉଠି) ହେଇଟେ ଟୁକି ଦେଖ୍, ସେ ଜୋକର୍‌ଟା କେମିତି ସେ ଚକ୍‌ସାବାଲା ପାଟିରୁ ସିଗ୍ରେଟ୍‌ଟା ଟାଣି ଆଣି ନିଜେ ଟାଣି ପକଉଚି ।

ଶାମ—ହେଇ୍ ! କାଇଁକି ସେମିତି ହଉଚ ?

ଟୁକ—ହେଇ ଶାମ ମାମୁ—ନମୁ ଭାଇ ସେଠି ଠିଆ ହୋଇଚି ।

ଶାମ—ଆରେ ସତେ ତ ! (ଅନ୍ତରାଳକୁ ଚାହିଁ) ଏ ନମୁ—ନମୁ ! ଏଁ ! ଏ କିଏ ? ଇଏତ ନମୁ ନୁହେଁ ।

ଟୁକ—ଠିକ୍ ନମୁ ଭାଇ ଭଳିଆ ଜାମା ପେଣ୍ଟ ସେ ପିନ୍ଧିଚି । ଦୂରରୁ ନମୁ ଭାଇ ଭଳିଆ ଦିଶୁଚି—ନାହିଁ ରମୁ ଭାଇ ?

ଏକସ୍ୱର—ପଳେଇ ଯାଅ—ପଳେଇ ଯାଅ—ବାଘ ପିଞ୍ଜରାରୁ ଫିଟି ଯାଇଚି—ପଳେଇ ଯାଅ···

ଶାମ—ଆରେ ରମୁ—ଟୁକି ! ପିଞ୍ଜରାରୁ ବାଘ ଫିଟିଯାଇଚି ! ନମୁ କୁଆଡ଼େ ଗଲା ? ନମୁ···ନମୁ···

ରମୁ—ନମୁ···ନମୁ ।

ଟୁକ—ନମୁଭାଇ—ନମୁଭାଇ

ଶାମ—ଲୋକ ଗୁଡ଼ାକତ ଛୁଟନ୍ ଛଟ ହୋଇ ଏଣେ ତେଣେ ପଳଉଚନ୍ତି
—ନମୁ—ନମୁ—ନମୁ···

ଟୁକ—(କାନ୍ଦ କାନ୍ଦ ହୋଇ) କ'ଣ କରିବା ମାମୁ—ନମୁଭାଇ
କୁଆଡ଼େ ଗଲା ?

ରମୁ—ତେମେ ଯାଅ ଶାମ ମାମୁ—ସେ ପାଖରେ ଯାଇ ଦେଖ ନମୁ
କୁଆଡ଼େ ଗଲା ।

ଶାମ—ତମ ଦୁହିଁଙ୍କୁ ଏଠି ଏକା ଛାଡ଼ି ମୁଁ ଯିବ କେମିତି ? ହଇଲୋ
ଟୁକ, ତୁ ଏଠି ରମୁ ପାଖରେ ଏକା ରହିବୁ ?

ଟୁକ—(ଡରି ଡରି) ମୁଁ—ମୁଁ—ମୁଁ କଛି ଜାଣିପାରୁ ନାହିଁ ମାମୁ !
ନମୁଭାଇ କାହିଁ ଗଲା ?

ରମୁ—କଛି ଡର ନାହିଁ ଟୁକ, ତୁ ଏଠି ମୋ ପାଖରେ ରହ—ଶାମ
ମାମୁ ଯାଆନ୍ତୁ ।

ଟୁକ—ହଁ ମାମୁ ମୁଁ ଏଠି ରହିବ । ତେମେ ଯାଇ ଦେଖ ନମୁଭାଇ
କୋଉଠି ଅଛି ?

ଶାମ—[ରହି ରହି] ଆଚ୍ଛା—ତେମେ···ତେମେ ଦୁହେଁ···ହଁ,
ଏଇଠି ଥାଅକ···[ଅନ୍ତରାଳକୁ ଚାହିଁ] ଏଇ ଜଣେ ପୁଲିସ
କନଷ୍ଟବଲ ଆସିଲେଣି···ମୁଁ ତାଙ୍କୁ ପଚାରି ବୁଝେ [ଶାମ
ଅନ୍ତରାଳକୁ ଯାଇ ପ୍ରାୟ ସଙ୍ଗେ ସଙ୍ଗେ ଫେରିଆସିଲା] ଆଉ
କଛି ଡର ନାହିଁ···ବାଘଟାକୁ ମାରି ଦେଲେଣି ।

ନମୁ—(ଅନ୍ତରାଳରୁ ଆସି) ମାରି ଦେଲେଣି !

ଶାମ—କଏରେ ? ନମୁ !

ଟୁକ } —ନମୁ ଭାଇ !
ରମୁ } —ନମୁ !

ଶାମ—ଆରେ ନମୁ ତୁ ଥିଲୁ କୋଉଠି ?

ନମୁ—ଏଇଠି ପରା·····ତମର ପଛଆଡ଼େ ଏଇଠି ବସିଥିଲି ।
ଶାମ—ତୁ ଜାଣିଲୁ କେମିତି ଆମେ ଏଠି ଅଛୁ ବୋଲି ?
ନମୁ—ମୁଁ କ'ଣ ଜାଣିଥିଲି ! ଲୋକ ଗୋଳମାଳରେ ମୁଁ ଠେଲିପେଲି ହୋଇ ଏ ଯାଏ ଚାଲି ଆସି ଏଇଠି ବସି ପଡ଼ିଲି । ଏଇନେ ଦେଖିଲି ବେଳକୁ ତେମେ !
ଶାମ—ହେ ଭଗବାନ ! ଘ୍ୟା' ପାଇଁ ମଣିଷ ଆସି ଅଧାପ୍ରାଣ ହେଲାଣି । ହଉ, ଆସ ଯିବା ଆସ ।
ଟୂକ—ରକ୍‌ସା ?
ଶାମ—କାଇଁ, ଖଣ୍ଡେ ବୋଲତ ରକ୍‌ସା ଆଖିରେ ପଡୁନି । ଏ ଗୋଳମାଳରେ କେଇଖଣ୍ଡ ରକ୍‌ସା ଭାଙ୍ଗିଲା କେଜାଣି ! ହେ ରକ୍‌ସା ! ନା; ସେଇଟା ଭଙ୍ଗାଟାଏ—ଠେଲି ଠେଲି ନଉଚି । ରକ୍‌ସା ମିଳିବ ନାଇଁ—ଆସ, ବାଟ କେଇଯାଏ ଯେ, ଚାଲିଚାଲି ଯିବା ଆସ ।
ରମୁ—ହଁ ମ— ଚାଲ, ଚାଲ ଚାଲ ଯିବା ।
ଶାମ—ହଁ, ଆସ । ଆ' ନମୁ ।
ନମୁ—ଯାଉଚି ପରା ।
ଶାମ—ରହ, ଏଇଠି ଟିକେ ଠିଆ ହୋଇଯା'—ସେ ବଡ଼ ରାସ୍ତାରେ ଗାଡ଼ି ମଟର ଭିଡ଼ ଭାଙ୍ଗୁ ଆମେ ଯିବା ।
ଟୂକ—ହଇରେ ନମୁ ଭାଇ—ବାଢ଼ି ପିଟିଲା ବେଳେ ତୁ କୋଉଠି ଥିଲୁ ?
ନମୁ—ମୁଁ ପରା ସେଇଠି ଥିଲି ।
ଶାମ—ସେଠିକି ଗଲୁ କାହିଁକି ?
ନମୁ—କ'ଣ ହେଲା କି ମାମୁ—ଆମେ ତ ସମସ୍ତେ ଆସି ସେ ଗେଟ୍ ପାଖରେ ଅଟକିଲେ ! ମୁଁ ତେଣିକି ଅନେଇ ଥାଏ । ଦେଖିଲି ଗୋଟେ ପିଞ୍ଜରା ଥୁଆ ହୋଇଚି । କେତେଗୁଡ଼ାଏ ଲୋକ ଚାରିପାଖ ଯାକ ବୁଲି ବୁଲି ଦେଖୁଛନ୍ତି । ମୁଁ କହିଲି— ରମୁ ଭାଇ ହେଉକାତ ଭିଡ଼ ଭାଙ୍ଗିବା ଯାଏ ଏଠି ଠିଆ

ହେଉଛନ୍ତି—ମୁଁ ଯାଏ ଦେଖିଆସେ । ସେଠି ଯାଇ ଦେଖିଲା ବେଳକୁ ପିଞ୍ଜରା ଭିତରେ ବାଘଟାଏ—

ରମୁ—ଦେଖିଲୁ ନମୁ ? ପିଞ୍ଜରା ଭିତରେ ବାଘକୁ ଦେଖିଲୁ ?

ନମୁ—ହଁ, ବାଘ ଶୋଇଥାଏ ।

ଟୁକ—ଇସ୍‌ରେ ରମୁଭାଇ ଆମେ ହେଲେ ଯାଇଥା'ନ୍ତେ—ପିଞ୍ଜରା ଭିତରେ ବାଘ କେମିତି ଶୁଏ ଦେଖିଥା'ନ୍ତେ !

ରମୁ—ସେଇଟା ଦୁଷ୍ଟଟାଏ—ସେ ଗଲା । ଆମେ ଯାଇଥିଲେ ଶାମ ମାମୁଙ୍କଠୁଁ ଗାଳି ଶୁଣିଥା'ନ୍ତେ ।

ନମୁ—ଶୁଣ୍ ମୋ କଥା । ବାଘ ସେମିତି ଶୋଇଥାଏ— ଆମେ ଦେଖୁଥାଉ । ଗୋଟାଏ ଟୋକା ଥିଲା···ଥିଲା··· ଗୋଟାଏ ଲମ୍ବା ବାଡ଼ି କୋଉଠୁ ଆଣି ବାଘଟାକୁ କେଞ୍ଚି ଦେଲା !

ରମୁ—<br>ଟୁକ— } —ସେଇଠୁ ?

ନମୁ—ବାଘଟା ବୋବାଇ ଗୁଡ଼ ପିଞ୍ଜରା ଭିତର ଏକାବେଳେ ମନ୍ଥି ପକେଇଲା ।

ଟୁକ—ସେ ଟୋକାଟା ସେମିତି କେଞ୍ଚୁଥାଏ ?

ନମୁ—ନା—ସିଏ ଆଉ କେଞ୍ଚିବ ? ରଡ଼ି ଶୁଣି ସେ ଲୁଆଡ଼େ ଗଲାଣି । ସେ ପିଞ୍ଜରା ବାଟ କେମିତି ଫିଟିଲା କେଜାଣି, ବାଘଟା ହୁଁ ବୋଲି ରଡ଼ି ଗୁଡ଼ ଏକା ଡ଼ିଆଁରେ ଯାଇଁ ଗେଲେରୀ ଉପରେ ।

ଟୁକ—ମୋ' ବୋଉଲୋ !!

ଶାମ—ଆଲୋ ତୁ ଡରୁଚୁ କାହିଁକି ? ବାଘ କ'ଣ ଏଠି ଅଛି ?

ଟୁକ—ଏ କଥା ଶୁଣି ତ ମୋ ଛାତି ଧଡ଼ ପଡ଼ ହେଉଚି ।

ଶାମ—ତୁ ଦେଖିଚୁ ନମୁ, ଗ୍ୟାଲେରୀ ଉପରକୁ ବାଘ ଆସିଥିଲା ?

ନମୁ—ହଁ ପରା, ଗ୍ୟାଲେରୀରେ ସେତେବେଳକୁ କେହି ଲୋକ ନ ଥା'ନ୍ତି । ବାଘ ଗ୍ୟାଲେରୀ ଉପରେ ବସିଥାଏ—ତଳେ

ଯେତେ ଲୋକ ଥିଲେ—କାଉଳି ବାଉଳି ଖାଇ ଏଣେ ତେଣେ ପଳେଇଲେ ।

ଶାମ—ଭାଗ୍ୟକୁ ଗୋଟିଏ ହେଲେ ଲୋକକୁ ବ ସେ ଖଣ୍ଡିଆ କରିନାହିଁ ।

ରମୁ—ତାକୁ ମାରି ନ ଦେଇ ଥିଲେ ସେ ଲୋକଙ୍କୁ ନ ଖାଇ ଛାଡ଼ି ଥା'ନ୍ତା !!

ଝୁନୁ—ତୁ ଚିହ୍ନି ପାରିଲୁ ନମୁଭାଇ—ସେଇଟା କୋଉ ବାଘ ?

ନମୁ—ଓଃ !! ପୂରା ଚିହ୍ନିଚି । ସେ ଯୋଉ ସବୁଆ ମହାବଳ ବାଘଟା—ଯାହା କାନ୍ଧ ଉପରେ ଛେଳି ଚଢ଼ୁଥିଲା···

ଝୁନୁ—ହଁ—ହଁ···ସେ ରିଙ୍ଗ୍ ମାଷ୍ଟର ପୁଣି ତାକୁ କାନ୍ଧରେ ବସେଇ ଘରପାଖ ଯାକ ବୁଲଉ ଥେଲା ।

ନମୁ—ହଁ ଲୋ ଝୁନୁ—କେଡ଼େ ସୁନ୍ଦର ବାଘଟା—ମିଛଟାରେ ତାକୁ ମାରିଦେଲେ !

ରମୁ—ଓଃ ! ବାଘଟା ପୁଣି ସୁନ୍ଦର ! ମାରି ଦେଇ ନ ଥେଲେ ସେ ମଣିଷ ନଖାଇ ଛାଡ଼ିଥା'ନ୍ତା !

ନମୁ—ତତେ ଖାଇଥା'ନ୍ତା ।

ରମୁ—ତୁ ତା' ପାଖରେ ଥିଲୁ , ଆଗେ ତତେ ଖାଇଥା'ନ୍ତା ।

ନମୁ—ଦେଖୁଚ ଶାମ ମାମୁ ?

ଶାମ—ହଇରେ ରମୁ !

ରମୁ—ଆଜ୍ଞା !

ଶାମ—ଜଙ୍ଗଲର ବାଘଟାକୁ ତେମେ ଧରିଆଣି ପିଞ୍ଜରାରେ ପୂରେଇ ପେଟପୂରା ଖାଇବାକୁ ନ ଦେଇ ଶୁଖେଇ ଶୁଖେଇ ରଖିବ ! ···ସେ ଯେବେ ପିଞ୍ଜରାରୁ ଫିଟି ମଣିଷ ଖାଇଲା—ସେ ଦୋଷ କ'ଣ ବାଘର ?

ରମୁ—ଆଉ ଦୋଷ କଣ ମଣିଷର ? ଜଙ୍ଗଲରେ ଥାଇ କ'ଣ ବାଘ ମଣିଷ ଖାଏନାହିଁ । ମୁଁ ତ କାଗଜରୁ ପଢ଼ିଚି···

ଶାମ—ହଁ, ଜଙ୍ଗଲ ବାଘ ମଣିଷ ଖାଏ ଯେ, ହେଲେ ମଣିଷର ସେମିତି ଉପକାର ବ ଢେ କରେ ।

ରମୂ—ବାଘ ପୁଣି ମଣିଷର ଉପକାର କରେ !

ଶାମ—ହଇଲୋ ଟୁକ—ବାଘ ମଣିଷର ଉପକାର କରେ ନାଇଁ ?

ଟୁକ—କରେ ନାଇଁ ପୁଣି ? ଏଇତ ସର୍କସ ହେଲା, ଆମେ ବାଘ ଖେଳ ଦେଖିଲୁ ।

ରମୁ—ଓଃ ! ଭରି କଥାଟାଏ କହିଲା ! ଆମେ ତ ହକ୍ ପଇସା ଦେଇ ସର୍କସ ଦେଖିଲୁ—ବାଘ ଆମର କ ଉପକାର କଲା ?

ଟୁକ—ମୋ' କଥା ଠିକ୍ ନୁହେଁ ନମୁଭାଇ ?

ନମୁ—ବିଲ୍‌କୁଲ୍ ଠିକ୍ ।

ରମୁ—ତୁ'ଟା ଭୁସ୍ ପଣ୍ଡିତ ।

ଶାମ—ମୋ' କଥା ଶୁଣ୍—ମୁଁ ସର୍କସ ବାଘ କଥା କହୁନି । ଜଙ୍ଗଲର ବାଘକଥା କହୁଚି ।

ଟୁକ—ଜଙ୍ଗଲ ଭିତରେ ବାଘ ତମେ ଦେଖିଛ ମାମୁ ?

ଶାମ—ଶୁଣ୍, ସେଇଟା ଘୋର ଜଙ୍ଗଲ । ଦିନେ ରାତିରେ ଆମେ କେଇଜଣ ଗାଡ଼ିରେ ବସି ସେଇ ଜଙ୍ଗଲ ଭିତର ରାସ୍ତାରେ ଯାଉ ଥାଉ । ଘଣ୍ଟାକୁ ଘଣ୍ଟା ବାଘ ଗର୍ଜନ ଶୁଣାଯାଉ ଥାଏ ।

ଟୁକ—ଇଲୋ ବୋଉଲୋ— ମୋ ଦେହ ଶୀତେଇ ଉଠୁଛି ।

ଶାମ—ଆ' ମୋ ପାଖକୁ ଆ—ଡ଼ରୁଚୁ କାହିଁକ ?

ନମୁ—ସେଇଠୁ କ'ଣ ହେଲା ?

ଶାମ—ବାଟରେ ଗୋଟାଏ ଗ୍ରେଟ ଗାଁ ପଡ଼ିଲା । ସେଠି ଶୁଣିଲୁ— ଆଉ ଆଗକୁ ଯିବା ଅସମ୍ଭବ ।

ଟୁକ—କାହିଁକ ? ବାଘ ଡ଼ରରେ ?

ଶାମ—ନା—ଶୁଣିଲୁ ପଲେ ବଣୁଆ ହାତି ଜଙ୍ଗଲ ଗୁଡ଼ ଚତରା… ମାନେ ଖୋଲା ଭୂଇଁ ଆଡ଼କୁ ଗଡ଼ଚନ୍ତି ।

ଟୁକ—ବଣୁଆ ହାତି କ'ଣ ?

ଶାମ—ଯୋଉ ହାତି ପୋଷା ମାନ ନ ଥା'ନ୍ତି—ବଣରେ ରହୁଥାନ୍ତି । ମଣିଷ ବାଘ ମୁହଁରୁ ବଞ୍ଚିପାରେ, ହେଲେ ବଣୁଆ ହାତି ମୁହଁରୁ ବଞ୍ଚିବ ନାହିଁ ।

ଟୁକ—ସେଇଠୁ ?

ଶାମ—ରାତି ପାହିଲା ବେଳକୁ ଷ୍ଟେସନ୍ ନ ଧଇଲେ ଆମର ଖୁବ୍ ଅସୁବିଧା ହେବ । ଆମ ଗାଡ଼ିଆଳଟା ଭାରି ସାହାସୀ । ଗାଡ଼ି ଗୁଡ଼ିଲା ।

ଟୁକ—ଗୁଡ଼ିଲା !

ଶାମ—ହଁ । ଧୀରେ ଧୀରେ ଆମ ଗାଡ଼ି ଗୁଲଥାଏ ।

ନମୁ—ସେଇଠୁ ?

ଶାମ—ପାହାନ୍ତା ବେଳକୁ ଆମେ ଜଙ୍ଗଲ ଗୁଡ଼ି ଖୋଲା ଯାଗାରେ ପହଞ୍ଚିଲୁ । ହଠାତ୍ ଦୂରରୁ ହାତିଙ୍କ ବିକଟ ସ୍ୱର ଶୁଣାଗଲା ।

ଟୁକ—ମା'ଲୋ !

ରମୁ—ତମେ ସେଇଠୁ କ'ଣ କଲ ?

ଶାମ—ଗାଡ଼ିଆଳ ସେଇଠି ଗାଡ଼ି ଅଟକେଇଲା । ହାତି ପଲଟା ଆମ ଆଡ଼କୁ ମାଡ଼ି ଆସୁଥିବାର ଜଣା ଯାଉଥାଏ । ଦଉଡ଼ି ପଳେଇଲେ ବି ବଞ୍ଚିବାର ଆଶା ଆମର ନ ଥାଏ । ଦଉଡ଼ିବାକୁ ଦେହ ମନରେ ବଳ ବି କାହିଁ ?

ଟୁକ—(ଡ଼ୋକଗିଳ) ସେଇଠୁ ?

ଶାମ—ଗାଡ଼ିରୁ ଓହ୍ଲାଇ ଆମେ ତଳେ ଠିଆ ହେଇ ଥାଉ । ହଠାତ୍ ଏକାବେଳେକେ ଦ'ଟା ବାଘର ଗର୍ଜନ ଶୁଣାଗଲା ।

ଟୁକ—କୋଉଠି ?

ଶାମ—ସେଇ ଯୋଉ ଆଉ ହାତୀପଲଟା ଆସୁଥା'ନ୍ତି ! ସେଇଠୁ ଆରମ୍ଭ ହେଇଗଲା ହାତୀ ଆଉ ବାଘର ଲଢ଼େଇ । ଗର୍ଜନରେ ଏକାବେଳେକେ ଗଗନ ପବନ ଫାଟୁଥାଏ ।

ଟୁକି—ସେମାନେ ଆଉ ତମ ଆଡ଼କୁ ଆସୁ ନ ଥା'ନ୍ତି ?

ଶାମ—ନା । ଭୟରେ ଆମେ ଗୋଟାଏ ଉଚ୍ଚ ଗଛରେ ଚଢ଼ିଯାଇ ଥାଉ । ଜହ୍ନ ରାତି । ପ୍ରାୟ ଅଧମାଇଲ ଦୂରରେ ଏ ଲଢ଼େଇ ଚାଲିଥାଏ । ଏତିକି ବେଳେ ରାତି ପାହି ଆସିଲା । ଲଢ଼େଇ କରି କରି ବାଘ ଆଉ ହାତୀ ସମସ୍ତେ ଜଙ୍ଗଲ ଭିତରକୁ ଚାଲିଗଲେ । ରାତି ପାହିଲା ।

ଟୁକି—ସେଇଠୁ ତେମେ ସବୁ ଗଛରୁ ଓହ୍ଲେଇ ଗାଡ଼ିରେ ଯାଇଥିବ, ନା ?

ଶାମ—ହଁ ।

ନମୁ—ଦେଖିଲୁତ ରମୁଭାଇ, ବାଘ ନ ଥିଲେ ଶାମ ଭାଇ କ'ଣ ସେଦିନ ହାତୀ ମୁହଁରୁ ବଞ୍ଚିଥା'ନ୍ତେ ।

ଶାମ—ସେଦିନତ ଆମେ ବାଘପାଇଁ ପ୍ରାଣ ପାଇଲୁ, ହେଲେ ମୁଁ ସେ କଥା କହୁନି ।

ନମୁ—ଆଉ ?

ଶାମ—ଆଉ କିଛି ଦୂର ଆଗକୁ ଯାଇ ଦେଖିଲୁ—ଶହ ଶହ ଏକର ଧାନ କିଆରି । ସେଥିର ଯାହା କହନ୍ତି—ଏକା ବେଳେକେ ସୁନାର ଫସଲ ଫଳିଥାଏ । କିଆରିରେ ପାଚିଲାଧାନ ଲହଡ଼ି ଭାଙ୍ଗୁଥାଏ । ସେଠା ଲୋକଙ୍କଠୁ ଶୁଣିଲୁ—ସେଦିନ ହାତୀ ପଞ୍ଝାଟା ଯଦି ଘଣ୍ଟାକ ପାଇଁ ଧାନ କିଆରିକି ଆସି ଥା'ନ୍ତେ—ତାହାଲେ ସବୁତକ କିଆରି ଧ୍ୱଂସ କରି ଦେଇ ଥା'ନ୍ତେ । ଫଳରେ ଗାଁଟିର ବର୍ଷକର ଆହାର ନଷ୍ଟ ହୋଇ ଥାନ୍ତା । ସେଇଥି ପାଇଁ ମୁଁ କହୁଥିଲି, ବେଳେ ବେଳେ ବଣ ଜଙ୍ଗଲର ବାଘ ଭାଲୁବି ଆମର ବନ୍ଧୁ ଭଳି କାମ

କରିଥାନ୍ତି । ସେମାନଙ୍କୁ ଆଖିବୁଜ ମାରି ଧ୍ୱଂସ କଲେ ଲାଭ ଯେତିକି ହବ—କ୍ଷତି ହବ ତା'ଠୁ ବେଶୀ ।...ଦେଖୁଚ ପିଲାଏ, କଥା କହୁ କହୁ ଆସି ଏତେବେଳ ହେଲାଣି । ଆସ ଯିବା ଏଥର ।

ଟୁକି—ଚାଲ ମାମୁ । ବାଘ-ହାତୀ କଥା ଶୁଣି ମୋ ଛାତି ଏମିତି ଥରିଲା ନା, ଘରେ ପହଞ୍ଚି ମୁଁ ଆଗେ କେମିତି ବୋଉ କୋଳରେ ମୁହଁ ଗୁଞ୍ଜିବି ।



[ଦୁଇଟି କିଶୋର ବାଳକ ବା ବାଳିକା ସାଙ୍କେତିକ ଫୁଟ୍‌ବଲ୍ ଓ ଭଲିବଲ୍ ପୋଷାକ ପିନ୍ଧି ଏଥିରେ ଅଂଶ ଗ୍ରହଣ କରିବେ]

# ଫୁଟ୍‌ବଲ୍ ଭଲିବଲ୍

[ଗୀତି ନାଟିକା]

(ଖୁବ୍ ଖୁସିରେ ନାଚକୁଦ ଫୁଟବଲ ଆସିଲା)

ଫୁଟ୍‌ବଲ—ଫୁଟ୍‌ବଲ ମୁଁ ଫୁଟ୍‌ବଲ
ଚିକ୍କଣ ଅଙ୍ଗ—ବର୍ତ୍ତୁଳ ଢଙ୍ଗ
ଗ୍ଲୋବ ପରି ମୁଁ ଗୋଲ ଗାଲ୍ ।
ଫୁଟ୍‌ବଲ ମୁଁ ଫୁଟବଲ ।
ଉପରେ ଚମଡ଼ା ଭିତରେ ଫାଙ୍କ୍
ଚନ୍ଦ୍ରଙ୍କୁ ଉଠେ ମୁଁ ପାଇଲେ କିକ୍
ଉଡ଼ି ଉଡ଼ି ଯାଏ, ଗଡ଼ି ଗଡ଼ ଯାଏ
ଲକ୍ଷ୍ୟ ମୋହର ବିପକ୍ଷ ଦଳର ଗୋଲ୍
ମୁଁ ଫିଲ୍‌ଡ଼ ମାର୍ଶାଲ୍-ଫୁଟବଲ ।

[ଭଲିବଲ ଆସିଲା । ସେ ଧୀର ଆଉ ଶାନ୍ତ]

ଭଲିବଲ—ଠିକଏ ରୁହ !
ଫୁଟ୍‌ବଲ—କୌନ୍ ହାଯ୍ ?
ଭଲି—ଚିହ୍ନିଚ ମତେ ?
ଫୁଟ୍—(ଚମକି) ଏଁ...!!
ମୋର ପରିତ ଦିଶୁଚୁ ସତେ !!
ଭଲି—ଆକାରେ ପ୍ରକାରେ ତମରି ସମ
ତମପରି କିନ୍ତୁ ନାହିଁ ମୋ ଭ୍ରମ
ତମରି ପରି ମୁଁ ଚିକ୍‌କଣ ଚେକା
ତମରି ପରି ମୁଁ ଗୋଲଗାଲ
ନାଁଟି ମୋର ଭଲିବଲ୍ ।

ଫୁଚ୍ଚି—ଭଲବଲ !! କି ଲଜ୍ଜା ! ତୁ’ଟା ଭଲବଲ !!
ଭଲ—ଲଜ୍ଜା କାହିଁକି ? କୁହତ ବନ୍ଧୁ ଫୁଚ୍ଚିବଲ ?

ଫୁଚ୍ଚି—ହୁସିଆର ମତେ ‘ବନ୍ଧୁ’ କହନା,
(ମୁଁ) ଖେଳ ରାଇଜର ରାଜା

ଭଲ—ଆଉ, ମୁଁ ?
ଫୁଚ୍ଚି—ତୁ ? ତୁର୍ ତୁକର ଭଲବଲ,
ହେଲେ ହେଇପାରୁ ମୋର ପ୍ରଜା ।
ଭଲ—ହସ ମାଡ଼େ ମତେ ହସ ମାଡ଼େ ଭାଇ
ଦେଖି ତମର ଏ ଢମ !
ଭେକଲ କୁକୁର ପରି ହୁଅ କିଆଁ
ମିଛେ ରାଗେ ତମ ତମ ?
ଖେଳ ରାଇଜରେ ଅଛୁ ଭଲ କିଏ
ରଜା ପୁଣି କିଏ ପ୍ରଜା ?

ଫୁଚ୍—ଅଲବତ୍ ଅଛୁ; ଫୁଚ୍‌ବଲ ମୁଁ
ଖେଳ ଦୁନିଆର ରାଜା,
ଗରମାଗରମ୍ ତାଜା
ତୁଟା, ନରମ ଦଳିଆ ପ୍ରଜା !!
ଭଲ—କାଇଁପାଇଁ ମୁହିଁ ହୀନ କି ନଗନ
ତୁମେ କାହିଁ ପାଇଁ ବଡ଼ ?
ମୁଁ କି ମାଟି ଗଦା ? ତୁମଠି ଅଛୁ କି
ରକତ-ମାଉଁସ-ହାଡ଼ ?
ରାଜପଣ ନାହିଁ ତୁଛାକୁ ରାଜା
ମନେ ମନେ କିଆଁ ଖାଉଚ ଖଜା ?

ଫୁଚ୍—ଖେଳରେ ବଡ଼ ମୁଁ ବଳରେ ମୁଁ ବଡ଼
ବଡ଼ ମୋ ଖେଳ ପଡ଼ିଆ
ମୋ’ ମହିମା ମହାସାଗର ସମାନ
ତୁ ତୁର କ୍ଷୁଦ୍ର ଗଡ଼ିଆ ।

(ମୋ) ପେନାଲ୍‌ଟି ବକ୍‌ସର ଆକାର ଯେତେ
ସାରା ପଡ଼ିଆ ତୋ' ହବନ ସେତେ !!

(ଫୁଟ୍‌ବଲ କିଛିକ୍ଷଣ ନାଚକୁଦ ପୁଣି ଆରମ୍ଭ କଲା )

ଫୁଟ୍—ଏତିକରେ ଆଉରେ ଭଲ ସରନ ମୋ' କଥା
ଭଲି—କଥା ନୁହେଁ ଯେତେ, ତହୁଁ ବଳ ସିନା ନଥା ।
ଫୁଟ୍—ଭଲ ଖେଳ ପାଇଁ ମୋତେ ବାରଜଣ ଲୋଡ଼ା
ଫୁଟ୍‌ବଲ ଖେଳିବାକୁ ଏଗାରଟି ଯୋଡ଼ା ।
ଭଲି—ସେ ଏଗାର ଯୋଡ଼ା ଭଲ ଖେଳନ୍ତୁତ ଭଲ ?
ଖେଳ ତ ହେବନ ଖାଲି ହେବେ ପେଲାପେଲ !
ଯେଉଁ ଖେଳ ପାଇଁ ଯାହା ରହିଛି ବିଧାନ
ତୁମେ କିଏ ? ମୁଁ କିଏ ? କରିବା ତା' ଆନ ?

ଫୁଟ୍—ମୋ ଖେଳେ ରେଫରି ଏକ, ଲାଇନ୍‌ସ ମେନ୍ ଦୁଇ
କି ବେଶ ପୋଷାକ ତାଙ୍କ କବା ତାଙ୍କ ଛଇ !
ଭଲି—ରେଫରି ତମର ଧାଉଁ ଥାଏ ତା ପାଦରେ
ମୋ ରେଫରି ବସେ ଉଚ୍ଚ ଚଉକି ଉପରେ ।
ଫୁଟ୍—ଏତେ ଠିକେ ନେଟ୍ ତୋ'ର ଦୁଇ ଖୁଣ୍ଟ ପୋତା
ମୋ' ପଡ଼ିଆ ଗୃହ କଣେ ଗୃହଟା ପତାକା ।
ଦୁଇ ଯୋଡ଼ା ପୋଷ୍ଟ୍ ମୋର ଦୁଇ ନେଟ୍ ଟଣା
ଭଲି—ନେଟ୍‌ରେ ପଶି ତୁମେ ହୁଅ ବାଟ ବଣା ।
ମୋ ନେଟ୍‌ରେ ବାଜେ ଯେବେ; ଫେରି ଆସେ ମୁହାଁ
ବାନ୍ଧ ହେଇ ରହେନା ମୁଁ ତମପରି କାହୁଁ ।

ଫୁଟ୍—ହଜାର-ହଜାର ଲୋକ ଦେଖନ୍ତି ମୋ' ଖେଳ
ଷ୍ଟାଡ଼ିୟମେ ନ ମିଳଇ କାହୁଁ ଥଳକୂଳ ।
ଚିଅର୍ ଅପ୍ ଚିଅର୍ ଅପ୍ ଉଠେ ପାଟି ଗୋଳ
ତାଳି ମାଡ଼ ଖେଳଯାଏ ହୁଏ ଯେବେ ଗୋଲ୍ ।

ଭଲି—ଖାଲି ନୁହେଁ ତାଳିମାଡ଼, ଶିଡିମତ ମାଡ଼
ଛତା ଉଠେ ଯୋତା ଉଠେ ଭୁଟେ କାହା ହାଡ଼ ।

*

କଏ ଘୁଡ଼େ ଢେଲ ପୁଣି କଏ ମାରେ ଛୁରୀ
ରେଫଗଙ୍କ ମୁଣ୍ଡ ଫାଟେ, ଏ’ କ ବାହାଦୁରୀ !

ଫୁଟ୍—ମୋ’ ଖେଳେ ଟିକଟ ବିକ୍ରୀ ଲକ୍ଷ ଲକ୍ଷ ଟଙ୍କା
ଟଙ୍କା ପାଖେ ସବୁ ମିଛ—ସବୁ ମୁହଁ ବଙ୍କା ।

ଭଲ—ଅସଲ କଥାଟା ଯେବେ କହିବ ଫିଟାଇ
ତମର ମୁହଁଟି ସିନା ଯିବ ବଙ୍କା ହୋଇ ।

ଫୁଟ୍—ଚଟକଣାଖିଆ ଭୁଟା ଆରେ ଭଲବଲ
କହୁ ବାଜେ କଥା, ମୁଁ ତୋ’ ରଜା ଫୁଟ୍‌ବଲ୍ ।

ଭଲ—ଚଟକଣା କଥା ମୁଁ ତ ମନା କରୁନାହିଁ
ଚଟକଣା ମାରେ ମତେ ମୋ ଖେଳାଳୀ ଭାଇ ।
ହୁଇସିଲ୍ ବାଜେ ଯେବେ ତମ ପଡ଼ଆରେ
ଦୁମ୍ ଦାମ୍ ବୁଟ ମାଡ଼ ବସେ କା’ ପିଠିରେ ?

ଫୁଟ୍—(ଦୁଃଖରେ) ଏଁ...... !

ଭଲ—ଏଁ ନାହିଁ, ଆଁ ନାହିଁ, କୁହ ସତ କଥା ।

ଫୁଟ୍—ହାରଲ ମୁଁ ତମ ପାଖେ ନୁଆଁଇଲ ମଥା ।

ଦୁହେଁ—ରଜା ନାହିଁ ପ୍ରଜା ନାହିଁ ନାହିଁ ବଡ଼ ସାନ
ଭଲବଲ୍ ଫୁଟ୍‌ବଲ୍ ଆମେରେ ସମାନ ।



ସୂଚନା—ଏହି ନାଟକରେ ବନ୍ଧୁକକୁ ଏକ ଚରିତ୍ର ରୂପେ ଗ୍ରହଣ କରାଯାଇଛି । ଏହି ବନ୍ଧୁକ ଚରିତ୍ରଟି ହେଉଛି ନାଟକର ଏକମାତ୍ର ଚରିତ୍ର । ଯେହେତୁ ବନ୍ଧୁକଟି ହେଉଛି ଏକ ଇଙ୍ଗିତ-ଧର୍ମୀ ଚରିତ୍ର, ଯେଉଁ କଳାକାର ବନ୍ଧୁକ ଚରିତ୍ରରେ ଅଭିନୟ କରିବେ, ତାଙ୍କ ହାତରେ ଗୋଟିଏ ବନ୍ଧୁକ ରହିବା ଦରକାର । ପୁଣି କଳାକାର ଜଣକ ଏକ କିଶୋର ବୟସର ବାଳକ ହେବା ବାଞ୍ଛନୀୟ । ଅଭିନୟ ବେଳେ କଳାକାରଟି କି ବେଶ ପୋଷାକ ପିନ୍ଧିବେ, ସେ କଥା ପ୍ରଯୋଜକ ସ୍ଥିର କରିବେ । ଅଭିନୟ ବେଳେ ଦରକାର ଅନୁଯାୟୀ **effect** ବା ଧ୍ୱନି ଯୋଜନା ଦିଆ ଯାଇପାରେ ।

# ବନ୍ଧୁକ ଗଲା ଯୁଦ୍ଧକୁ

(ଏକକ ଅଭିନୟ)

[ଏକ ଗାମ୍ଭୀର୍ଯ୍ୟପୂର୍ଣ୍ଣ ବାତାବରଣ ଭିତରେ ବନ୍ଧୁକ ମଞ୍ଚ ଉପରକୁ ଆସିଲା ।]

ବନ୍ଧୁକ—ଏମିତ ତ ପୁଣି ଦିନ ଥିଲା, ଯୋଉଦିନ ଲୋକେ ବଡ଼ ବଡ଼ ଗଛ ଉପାଡ଼— ବଡ଼ ବଡ଼ ପଥରଖଣ୍ଡମାନ ଧରି ଯୁଦ୍ଧକୁ ଯାଉଥିଲେ । ଶର ଧନୁ ବର୍ଚ୍ଛା ଓ ତରବାରୀ ସାଙ୍ଗକୁ ଗଛର ଗଣ୍ଡି ଆଉ ପଥର ଡିମା ସବୁକୁ ସେତେବେଳେ ଅସ୍ତ୍ରଶସ୍ତ୍ର ରୂପେ ସୈନ୍ୟମାନେ ଯୁଦ୍ଧରେ ବ୍ୟବହାର କରୁଥିଲେ । ଇଏ ହେଲା ହଜାର ହଜାର ବର୍ଷ ତଳର କଥା । ତା'ପରେ ଯୁଗ ବଦଳି ବଦଳି ଆସିଲା— ସେଇ ସଙ୍ଗେ ସଙ୍ଗେ ଯୁଦ୍ଧ ଭୂଇଁରେ ଅସ୍ତ୍ରଶସ୍ତ୍ରମାନେ ବି ବଦଳିଲେ । ··· ··· ଏଇମିତି ଏକ ଦିନରେ ହେଲା ଆମ ଜାତି— ଆମର ଏହି ବନ୍ଧୁକ ଜାତିର ଜନ୍ମ । ଆଜି ଅବଶ୍ୟ ମୁଁ ଆମ ଜନ୍ମ ଇତିହାସ ଏଠି କହୁନି । ଆମ ଏଇ ଭାରତ ଭୂଇଁରେ ପ୍ରଥମେ କୁଆଡ଼େ ମୋଗଲ ବାଦଶାହ ବାବର ଯୁଦ୍ଧ କ୍ଷେତ୍ରକୁ ବନ୍ଧୁକ କମାଣ ସବୁ ଆଣିଥିଲେ । ସିଏ ମଧ୍ୟ କେତେ ଶହ ବର୍ଷ ତଳର କଥା । ସେ କଥା ବି ମୁଁ ଆଜି କହୁନି । ମୁଁ ଆଜି କହୁଛି ମୋ ନିଜ କଥା । ଏ ପୃଥିବୀର ଲକ୍ଷ ଲକ୍ଷ କୋଟି କୋଟି ବନ୍ଧୁକ ଭିତରୁ ମୁଁ ଏକ ବନ୍ଧୁକ—ରାଇଫଲ୍ ।···

ବନ୍ଧୁକ ମୁଁ— ମୋ କାମ କଥା କିଏ ନ ଜାଣେ ! ମୁଁ ଯୁଦ୍ଧକୁ ଯାଇଥିଲି—ଆଜି ଏଠି ମୋର ସେଇ ଯୁଦ୍ଧ କାହାଣୀ ମୁଁ କହିବି । (ଟିକିଏ ରହି) ତେବେ ନା । ମୁଁ ଯୁଦ୍ଧକୁ ଯିବା କଥା କହିବା ଆଗରୁ ମୋ ନିଜ କଥା

ଟିକଏ କୁହେ······ ମୋର ତ ଜନ୍ମ ଗୋଟାଏ କାର-
ଖାନାରେ। ମୋ ଜନ୍ମ ପରେ ମୋତେ ଆଉ ଗୋଟାଏ
ଜାଗାକୁ ନିଆଗଲ୍। ମୁଁ ଠିକ୍ କାମର କି ନୁହେଁ ସେ କଥା
ମତେ ପରୀକ୍ଷା କରି ଦେଖାଯିବ। ମୋ ପରୀକ୍ଷା ଆରମ୍ଭ
ହେଲ୍। ମୋ ଭିତରୁ ଗୁଳି ଏଠିକି ସେଠିକି ମରା ହଉଥାଏ—
ସବୁଥିରେ ମୁଁ ପାଶ୍ କରିଯାଉଥାଏ। ସବା ଶେଷକୁ
ଗୋଟାଏ ଚନ୍ଦପରିକା ଜିନିଷ—ତା ଭିତରେ କେତେ ରଙ୍ଗର
ବୃତ୍ତ ବୁଲି ହେଉଥାଏ। ବୃତ୍ତର ଠିକ୍ ମଝିରେ ଗୋଟିଏ
ବିନ୍ଦୁ, ସେଇ ବିନ୍ଦୁକୁ ଲକ୍ଷ୍ୟ କରି ଗୁଳି ମାରିବା କଥା।
ସେଇଟା ମୋର ଶେଷ ପରୀକ୍ଷା······(ଟିକଏ ହସି) ଆଚ୍ଛା,
ମୁଁ ମୋ ପରୀକ୍ଷା କଥା ରଖି, ଆଉ ଗୋଟିଏ ପରୀକ୍ଷା କଥା
କହୁଛି। ସେଇଟା ହେଲ୍ ମହାଭାରତର କଥା। କୁରୁପାଣ୍ଡବ
ରାଜପୁତ୍ରମାନଙ୍କର ସେଦିନ ଅସ୍ତ୍ରବିଦ୍ୟା ପରୀକ୍ଷା। ଗଦାଯୁଦ୍ଧ
ପରୀକ୍ଷା ପରେ ଧନୁର୍ବିଦ୍ୟା ପରୀକ୍ଷା ହେଲ୍।

ବେଶ୍ ଦୂରରେ ଗୋଟିଏ ପାହାଡ଼—ପାହାଡ଼ ଉପରେ
ଗୋଟିଏ ଗଛ। ସେଇ ଗଛର ଗୋଟିଏ ଉପର ଡାଳ
—ଡାଳର ଗୋଟିଏ ପତ୍ର—ସେଇ ଶାଗୁଆ ରଙ୍ଗର ପତ୍ର
ଉପରେ ଗୋଟିଏ ଶାଗୁଆ ରଙ୍ଗର ଛୋଟ ଚଢ଼େଇ ବସିଛି।
ସେଇ ଚଢ଼େଇର ଆଖିକୁ ଶର ମାରି ଫୁଟାଇ ଦେଇ
ପାରିଲେ ପରୀକ୍ଷା ଠିକ୍ ହେବ। ପରୀକ୍ଷା ଆରମ୍ଭ ହେଲା।
ରାଜପୁତ୍ରମାନେ ଶର ମାରିଲେ। କାହା ଶର ବାଏଁ ବାଏଁ
ଏଣେ ତେଣେ ଉଡ଼ି ଗଲାତ କାହା ଶର ଗଛ ଗଣ୍ଡିରେ
ବାଜିଲ୍ କି ଗଛ ଡାଳରେ ବାଜିଲା। ଚଢ଼େଇ ଆଖି କଥା
ତେଣିକି ଥାଉ, କୁରୁ ଶହେ ଭାଇ ଆଉ ପାଣ୍ଡବ ପାଞ୍ଚ
ଭାଇଙ୍କ ଭିତରୁ କେହି ଭାଇ ଚଢ଼େଇଟାକୁ ବି ଦେଖି
ପାରିଲେ ନାହିଁ। ଶେଷକୁ ଆସିଲେ ଅର୍ଜୁନ। ଗୁରୁଦେବ
ଦ୍ରୋଣାଚାର୍ଯ୍ୟଙ୍କ ପାଦ ଛୁଇଁ ଧନୁରେ ଶର ଯୋଖିଲେ।

ସମସ୍ତେ ଚୁପ ଚୁପ । କୋଉଠି ଟୁଂ ବୋଲି ଶବ୍ଦଟିଏ ନାହିଁ । ଅର୍ଜୁନ ଶର ଛାଡ଼ିଲେ । ଶର ସା…ଏଁ କରି ଯାଇ ଚଢ଼େଇର ଆଖି ଫୁଟେଇ ଦେଲା । ଶର ସହ ଚଢ଼େଇ ଆସି ତଳେ ପଡ଼ିଲା । ହଜାର ହଜାର ଲୋକ ଅସ୍ତ୍ର ପରୀକ୍ଷା ଦେଖୁଥିଲେ, ସମସ୍ତଙ୍କ କରତାଳିରେ ଚାରିଆଡ଼ କମ୍ପି ଉଠିଲା । ଦ୍ରୋଣାଚାର୍ଯ୍ୟ ଆନନ୍ଦରେ ଅର୍ଜୁନଙ୍କୁ କୁଣ୍ଢେଇ ପକେଇଲେ ।…ଆଚ୍ଛା କୁହନ୍ତୁ ତ, ମୋର ଶେଷ ପରୀକ୍ଷା ପୂର୍ବରୁ ମହାଭାରତ ସମୟର ଏଇ ପରୀକ୍ଷା କଥା ଭାବି ମନ ମୋର କ'ଣ ହଉଥିବ ! …ମୋ ଶେଷ ପରୀକ୍ଷା ଆରମ୍ଭ ହେଲା । ବୃତ୍ତ ଭିତର ସେଇ ବିନ୍ଦୁରେ ମୋ ଭିତରେ ଗୁଳି ଯାଇ ବାଜିଲେ ମୋର ଫାଇନାଲ ପରୀକ୍ଷା ମୁଁ ପାଶ୍ କରିବି । ମୋ ଭିତରେ ଗୁଳି ଭର୍ତ୍ତି ହେଲା—ଉତ୍ତେଜନାରେ ମୋ ଛାତି ଥରୁଥାଏ—ଟ୍ରିଗାର୍ ଚପା ହେଲା—ଆଖି ପିଛୁଳାକେ ମୋ ଭିତରୁ ଗୁଳି ଛୁଟିଯାଇ ବୃତ୍ତ ଭିତରେ ବିନ୍ଦୁରେ ବାଜିଲା —ଓଃ ! ବିଶ୍ୱାସ କରନ୍ତୁ, ସେଦିନ ମୋ ଆଗରୁ ଆଉ ଯୋଉ ବନ୍ଧୁକ ମାନେ ଏଇ ଶେଷ ପରୀକ୍ଷା ଦେଇଥିଲେ, ସେମାନେ କେହି ଏକା ଥରକେ ପାଶ୍ କରି ନଥିଲେ । ମୁଁ ଏକା ଥରକେ ଫାଇନାଲ ପରୀକ୍ଷା ପାଶ୍ କରିଗଲି । ମନରେ ମୋର କି ଆନନ୍ଦ—କି ଉତ୍ତେଜନା । ଆମ ବଡ଼ ଅଫିସର ଖୁସିରେ-ସ୍ନେହରେ ମତେ ଆଉଁସି ପକେଇଲେ । ତାଙ୍କ ମୁହଁରେ ହସ ଉଚ୍ଛୁଳି ଉଠୁଥାଏ । ମତେ କହୁଥାନ୍ତି—ତୁ ବାହାଦୁର—ତୁ ଠିକ୍ କାମ ଚଳେଇ ନେଇ ପାରିବୁ ।

ତା'ପରେ ମୋର ହଜାର ହଜାର ସାଙ୍ଗ ଭାଇ ସେଦିନ ସିଏ ଯୁଆଡ଼େ ନିଜର ଭାଗ୍ୟ ନେଇ ଚାଲିଗଲେ । କିଏ ଗଲା ରିଜର୍ଭ ଲାଇନକୁ—କିଏ ଗଲା ମିଲିଟାରୀ ପୋଲିସ୍ ମେଗଜିନ୍‌କୁ । —ମୁଁ କିନ୍ତୁ ଗଲି ଗୋଟାଏ ସେନା ଛାଉଣୀକୁ । ସେଇଠି ମୁଁ ରହିଲି । ବୀର ବାହାଦୁର

ଜଓ୍ୱାନ୍‌ମାନେ ଖୁବ୍ ଆଦର କରି ମତେ ରଖିଲେ । ଦେହ ମୋର ସବୁବେଳେ ସଫା ସୁତୁରା । ଜଓ୍ୱାନମାନେ ସବୁ-ଦିନେ ପ୍ୟାରେଡ୍ କରନ୍ତି—ଯୁଦ୍ଧ ବିଦ୍ୟା ଅଭ୍ୟାସ କରନ୍ତି । କୋଉଦିନ ସେମାନେ ମତେ ସାଥିରେ ନେଇ ଯାଆନ୍ତି—କୋଉଦିନ ଅବା ଗୁଉଣୀରେ ଗୁଡ଼ଦେଇ ଯାଆନ୍ତି । ଦିନେ ଭାରି ଗୋଟିଏ ମଜାର ଘଟଣା ଘଟିଲା । ଜଣେ ଜଓ୍ୟାନ ବୋଧହୁଏ ତା' କାମରେ କଣ ଟିକଏ ଗୋଲମାଲ କଲା । ସଙ୍ଗେ ସଙ୍ଗେ ବିଗୁର ହୋଇ ଦଣ୍ଡ ବିଧାନ ହେଲା—କାନ୍ଧରେ ବନ୍ଧୁକ ପକାଇ ସେ ଅଧିକ ପାଞ୍ଚ ଘଣ୍ଟା ପ୍ୟାରେଡ୍ କରିବ ! ସେଇଆ ହେଲା । ବିରାଟ ପ୍ୟାରେଡ୍ ପଡ଼ିଆରେ ଜଓ୍ୱାନଟି ଏକା ଏକା ପ୍ୟାରେଡ୍ କରୁଥାଏ । କାନ୍ଧରେ ଥାଏ ମୁଁ—ମୁଣ୍ଡ ଉପରେ ଟାଇଁ ଟାଇଁଆ ଖରା । ଜଓ୍ୱାନଟି ପୂରା ଦମ୍‌ରେ ପ୍ୟାରେଡ୍ କରି ଗୁଲଚି । ମନରେ ଦୟା ହେଲା । ଭାବିଲି—"ଏ ମୁଣ୍ଡ ଫାଟା ଖରାରେ ତ ଇଏ ଝାଳ ନାଳ ହୋଇ ଯିବଣି । ତା' ସାଙ୍ଗକୁ ବୋଝ ଉପରେ ନଳିତା ବିଡ଼ା ପରି କାନ୍ଧ ଉପରେ ମୁଁ ଗୋଟିଏ ଓଜନିଆ ଜିନିଷ ଲଦା ହୋଇଚି !! ସତରେ, ମୋ ମନରେ ଭାରି ଦୁଃଖ ହେଲା । ମନ ହଉଥାଏ, ତା' କାନ୍ଧ ଉପରୁ ଡେଇଁପଡ଼ି ମୋ' ଗୁଉଣୀକୁ ମୁଁ ପଳେଇ ଯା'ନ୍ତି । ···କିନ୍ତୁ ଇଏ କଣ ? ଜଓ୍ୱାନଟି ଯେପରି ମୋ ମନ କଥା ବୁଝିପାରି, ତା' ମନକୁ ମନ କହିଲା—"ପ୍ରତ୍ୟେକ ଜଓ୍ୟାନ ନିଜ ନିଜର କର୍ତ୍ତବ୍ୟ କରିବା ହଉଚି ପରମ ଧର୍ମ । ସେଥିରେ ଅବ-ହେଳା କଲେ ପ୍ରାୟଶ୍ଚିତ୍ତ କରିବାକୁ ପଡ଼ିବ । କାନ୍ଧରେ ବନ୍ଧୁକ ପକାଇ ଅଧିକା ପାଞ୍ଚ ଘଣ୍ଟା ପ୍ୟାରେଡ୍ କରୁଚି ବୋଲି ମନରେ ଦୁଃଖ ନାହିଁ । ଏଇଟା ବରଂ ମୋର ଦରକାର । କାଲି ଯଦି ଯୁଦ୍ଧ ଲାଗେ, ତେବେ ତ ପାଞ୍ଚ ଘଣ୍ଟା କ'ଣ, ପାଞ୍ଚ ଦିନ ଧରି ହୁଏତ ଏମିତି ବନ୍ଧୁକ

ଫକାରେ କାମ କରିବାକୁ ପଡ଼ିବ" । ଜଓ୍ୱାନ୍‌ର ଏ ମନ-ଭାବ ଜାଣି ମୁଁ ଆଶ୍ଚର୍ଯ୍ୟ ହେଲି—ଖୁସି ବି ହେଲି । ଆଜି ଏଇ ଭଳି ଜଣେ ଦେଶ ପ୍ରେମୀ ଜଓ୍ୱାନ ହାତରେ ମୁଁ ପଡ଼ିଥିବାରୁ ନିଜକୁ ଭାଗ୍ୟବାନ ମନେ କଲି । ଜଓ୍ୱାନଟିର ସେଇ କଥା ମୁଁ ମନେ ମନେ ଭାବୁଥାଏ—ସତରେ କ'ଣ ଯୁଦ୍ଧ ହବ ?

ହଁ, ଯୁଦ୍ଧ ହେଲା ! ହଠାତ୍ ଦିନେ ଖବର ମିଳିଲା ଶତ୍ରୁ ସୀମାନ୍ତ ଆକ୍ରମଣ କରିଛି । ଛାଉଣୀରେ ଚହଳ ପଡ଼ି-ଗଲା । ଦଳ ଦଳ ହୋଇ ଜଓ୍ୱାନମାନେ ସୀମାନ୍ତକୁ ଚାଲିଲେ । ମୁଁ ମଧ୍ୟ ଚାଲିଲି । ଇଏ ମୋର ପ୍ରଥମ ଯୁଦ୍ଧ ଯାତ୍ରା । ମନ ଭିତରେ ଅସରନ୍ତି ଭାବନା । କେତେ ଚମକ !! କେତେ ଉତ୍ତେଜନା !!! କେମିତି ଯାଇ ଯୁଦ୍ଧ କ୍ଷେତ୍ରରେ ମୋ କରାମତି ଦେଖାଇବି । ହଁ, କହିବାକୁ ଭୁଲି ଯାଇଛି—ମୋର ସାଥି ହଉଛି ମୋର ସେଇ ପୁରୁଣା ଚହ୍ଲା ଜଓ୍ୱାନଟି । ମୁଁ ନିଶ୍ଚିନ୍ତରେ ଯୁଦ୍ଧକୁ ଗଲି । ମୁଁ ଭାବିଥିଲି, ଯୁଦ୍ଧ କ୍ଷେତ୍ରରେ ପହଞ୍ଚି ଦେଖିବି ଚାରିଆଡ଼େ ଧାଡ଼ି ଭୁଣ୍ଡି-ଗୋଳମାଳ-ହାଣକାଟ ଚାଲିଥିବ । କିନ୍ତୁ ତା ନୁହେଁ । ପହଞ୍ଚି ଦେଖିଲି ଚାରିଆଡ଼େ ଶୂନ୍‌ଶାନ-ସବୁ ନିସ୍ତବ୍ଧ । ପାହାଡ଼ିଆ ଜାଗା । ଜଓ୍ୱାନମାନେ ନିଜ ନିଜର ଘାଟିଜାଗା ଦେଖି ଛକି ରହିଲେ । ଦୂରରେ ଶତ୍ରୁ କୋଉଠି ଲୁଚି ରହିଛି । କେତେବେଳେ ଆକ୍ରମଣ କରିବ କହି ହଉନି । ଯେମିତି ହଉ, ଶତ୍ରୁ ଆକ୍ରମଣକୁ ପ୍ରତିରୋଧ କରିବାକୁ ପଡ଼ିବ । ତାକୁ ହରେଇବାକୁ ପଡ଼ିବ । ···ସମସ୍ତେ ଜାଗ୍ରତଆର ହୋଇ ରହିଲେ । ବାର ଘଣ୍ଟା ପରେ ଶତ୍ରୁ ଆଗେଇ ଆସିଲା । ଗୁଡ଼ୁମ୍···ଗୁଡ଼ୁମ୍···ଗୁଡ଼ୁମ୍ । ବଣ ପାହାଡ଼ କମ୍ପି ଉଠିଲା—ପ୍ରବଳ ବେଗରେ ଯୁଦ୍ଧ ଚାଲିଲା । ମୋର ଜଓ୍ୱାନ ବନ୍ଧୁଟି ଭାରି ଦୁସିଆର···ଖୁବ୍ ବଳବାନ ।

ମୋ' ଭିତରେ ଗୁଳି ଖଞ୍ଜିବାରେ ହାତକୁ ତା'ର ତିଳେ ହେଲେ ବିଶ୍ରାମ ନ ଥାଏ । ପବନ ବେଗରେ ମୋ ଭିତରୁ ଗୁଳି ପରେ ଗୁଳି ଛୁଟି ଚାଲିଥାଏ । ଦେହସାରା ମୋର କମ୍ପି ଉଠୁଥାଏ । ଉତ୍ତେଜନାର ସୀମା ନାହିଁ । ପ୍ରାୟ ଛ' ସାତ ଘଣ୍ଟା ଏମିତି ଯୁଦ୍ଧ ଚାଲିଲା ପରେ ଶତ୍ରୁ ପକ୍ଷ ହଟି ପଳେଇଲେ । ଆମ ପକ୍ଷର ସମସ୍ତଙ୍କ ମନ ଖୁସି । ମୋ' ଜଓ୍ୱାନ ବନ୍ଧୁଟି ସହିତ ମୁଁ ମଧ୍ୟ କମ୍ ଖୁସି ନୁହେଁ । ତଥାପି ମନ ଭିତରେ ମୋର ଅବଶୋଷ–ମୁହାଁମୁହିଁ ମୁଁ ଶତ୍ରୁକୁ ଭେଟି ପାରିଲି ନାହିଁ ।···

ତା ପରଦିନ ଘଟଣା । ଶତ୍ରୁ ଆକ୍ରମଣର କିଛି ସୂଚନା ମିଳୁ ନାହିଁ । କଥା ହେଲା—ଆମ ପକ୍ଷରୁ ଶତ୍ରୁର ସନ୍ଧାନ ନେବାକୁ ପଡ଼ିବ । ସେନାପତିଙ୍କ ଆଦେଶରେ ମୋର ଜଓ୍ୱାନ ବନ୍ଧୁଟି ଶତ୍ରୁକୁ ଠାବ କରିବା ପାଇଁ ବାହାରିଲା । ସିଏ ଆଉ ମୁଁ । ଆମ ସାଥିରେ ଆଉ କେହି ନାହାନ୍ତି । ମତେ ପ୍ରସ୍ତୁତ ରଖି ଜଓ୍ୱାନଟି ଖୁବ୍ ହୁସିଆରରେ ଆଗେଇ ଚାଲିଥାଏ । ହଠାତ୍ ଗୋଟାଏ ଗଛ ଉଢ଼ାଳରୁ ତିନି ଜଣ ଶତ୍ରୁ ସୈନ୍ୟ ବାହାରି ଆସିଲେ । ଆମେ ଦୁହେଁ ଚମକି ଉଠିଲୁ । କିନ୍ତୁ ଆଖି ପିଛୁଳାକେ ମୋ' ଭିତରୁ ଗୁଳି ଛୁଟି ଯାଇ ଜଣକ ଛାତି ଫୁଟାଇ ଦେଲା । ସଙ୍ଗେ ସଙ୍ଗେ ସେ ସେଇଠି ଟଳି ପଡ଼ିଲା । ଅନ୍ୟ ଦୁଇ ଜଣ ଏପରି ଘଟଣାରେ ପ୍ରଥମେ କିଛି କରିବେ କିଛି ବୁଝି ନପାରି ଆମ ଆଡ଼କୁ ଧାଇଁ ଆସିଲେ । ଏକାବେଳେକେ ସାମନା ସାମ୍ନି । ଏତେ ପାଖରୁ ଗୁଳି ଫୁଟିବାର ଉପାୟ ନାହିଁ । ହାତାହାତି ଯୁଦ୍ଧ ଆରମ୍ଭ ହେଇଗଲା । ସେମାନେ ଦୁଇ ଜଣ—ଜଓ୍ୱାନ ଜଣେ । କାବୁ କରି ଦେବା ଅସମ୍ଭବ ନୁହେଁ । ମୋ' ମନରେ ଭୟ ଲାଗିଲେ ମୁଁ ଶତ୍ରୁ ହାତରେ ପଡ଼ିବି । କିନ୍ତୁ ଯେମିତି ଟିକିଏ ସୁବିଧା ମିଳିଛି, ମୋ ସଙ୍ଗୀନ୍ ମୁନରେ ଜଣକ କଲିଜା ଏକା ବେଳେକେ ଚିରି ହୋଇଗଲା । ପ୍ରଥମ

ଜଣକ ପରେ ସେ ମଧ୍ୟ ଟଳି ପଡ଼ିଲା । ସାଥି ଦୁଇଜଣଙ୍କର ଏ ଅବସ୍ଥା ଦେଖି ତୃତୀୟ ଜଣକ ପ୍ରାଣ ବିକଳରେ ଦଉଡ଼ି ପଳାଇବାକୁ ଲାଗିଲା । କିନ୍ତୁ ପଳେଇବ କୁଆଡ଼େ ? ଜଓ୍ୱାନର ଟାଣ ହାତ ମୂଠା ମତେ ଛୁଇଁଲା କି ନାଇଁ ମୋ ଭିତରୁ ଗୁଳି ଛୁଟିଯାଇ ସେ ଲୋକଟାର ମୁଣ୍ଡ ଛିନ୍ନ କରିଦେଲା । ବାସ୍ । ମାତ୍ର କେଇ ମୁହୂର୍ତ୍ତରେ ତିନି ଜଣ ଶତ୍ରୁ ସୈନ୍ୟ ନିପାତ ହେଲେ । ଆଉ କାହାର ସନ୍ଧାନ ମିଳିଲା ନାହିଁ । ଖୁସି ମନରେ ଜଓ୍ୱାନ ଘାଟିକୁ ଫେରିଲା । ମୋ ମନରେ ଗର୍ବ । କାରଣ ମୋ ମନ କାମନା ପୂର୍ଣ୍ଣ ହୋଇଛି ।

ଏହାପରେ ଶତ୍ରୁ ସୈନ୍ୟ ହଟି ଗଲେ । ଯୁଦ୍ଧ ବନ୍ଦ ହେଲା । ମୁଁ ବିଶ୍ରାମ ନେଲି । କିନ୍ତୁ ବିଶ୍ରାମ ନେବି ସେଇଦିନ ପର୍ଯ୍ୟନ୍ତ—ଯୋଉ ଦିନ ପୁଣି ଶତ୍ରୁ ସାଥିରେ ଭେଟ ହେବ । ···ମୁଁ ପୁଣି ଯିବି ଯୁଦ୍ଧକୁ । ମୋ ମନର ଭାବନା ମୋ' ମନରେ ଅଛି, ପୁଣି ଯୁଦ୍ଧ ଆରମ୍ଭ ହୋଇଗଲା । ଏଥର ଶତ୍ରୁ ଆମ ଦେଶର ପୂର୍ବ ପଟେ ହଠାତ୍ ଆକ୍ରମଣ କଲା । ଆମ ଦେଶ ସ୍ୱାଧୀନ ହେଲା ପରଠୁଁ ସେମାନେ ସବୁବେଳେ କହି ହଉଥିଲେ ଯେ ସେମାନେ ଆମର ବନ୍ଧୁ—ଭାଇ ଭାଇ । ସେମାନଙ୍କ ସହିତ ଆମ ଦେଶର ଯେ କେବେ ଯୁଦ୍ଧ ହେବ, ସେକଥା ଆମେ ଏକା କାହିଁକି, ପୃଥିବୀର ଅନ୍ୟ କେହି ଦେଶ ମଧ୍ୟ କେବେ ଭାବି ନଥିଲେ । କିନ୍ତୁ ସବୁ ବନ୍ଧୁତା, ସବୁ ଭାଇ ପଣିଆକୁ ପଛରେ ପକେଇ, ସେମାନେ ହଠାତ୍ ରାତି ଅଧରେ ଆମ ଦେଶର ଉତ୍ତର-ପୂର୍ବ ପଟେ ଆକ୍ରମଣ କରିଦେଲେ । ଆମ ପକ୍ଷରୁ ପ୍ରତିରୋଧ ହେଲା । ଆକ୍ରମଣ ମଧ୍ୟ ଚାଲିଲା । ପର୍ବତ ଅଞ୍ଚଳ । ମୋର ସେଇ ପୁରୁଣା ସାଥି ସେଇ ଜଓ୍ୱାନ୍‌ଟି ସାଙ୍ଗରେ ମୁଁ ମଧ୍ୟ ଏ ଯୁଦ୍ଧକୁ ଗଲି । ଏ ଯୁଦ୍ଧ ଖୁବ୍ ଭୀଷଣ ଆକାର ଧରିଥାଏ । ମୋ' ଭିତରୁ ଗୁଳି ଛୁଟେଇ ମୋ ଜଓ୍ୱାନ କେତେ ଶତ୍ରୁ

ସୈନ୍ୟ ମାରିଚି—କେତେ ଜଣଙ୍କୁ ଆହତ କରିଚି, ସେ ହିସାବ ମୁଁ ରଖି ପାରିଲି ନାହିଁ । ···ତେବେ ଏ ଯୁଦ୍ଧ ବେଶୀ ଦିନ ଚାଲିଲା ନାହିଁ—କୋଡ଼ିଏ ଦିନ ପରେ ବନ୍ଦ ହୋଇଗଲା । କିନ୍ତୁ ଏଇ ଯୁଦ୍ଧ ଚାଲିଥିଲା ବେଳେ ଗୋଟିଏ ଭାରି ମଜା ଘଟଣା ଘଟିଲା । ସେଇ କଥା କହୁଚି : ଦିନ ପ୍ରାୟ ଦୁଇଟା । ଏଇ କେଇ ଘଣ୍ଟା ହେଲା ଯୁଦ୍ଧ ବନ୍ଦ ଥାଏ । ସକାଳୁ ଆମ କମ୍ପାନୀର ଜଓ୍ୱାନ୍‌ମାନେ କିଛି ଖାଇ ନ ଥା'ନ୍ତି । ଏବେ ଖାଇବେ । ପ୍ଲେଟରେ ବଢ଼ାବଢ଼ି ହେଲା । ଠିକ୍ ଖାଇବାକୁ ବସିଚନ୍ତି, ଅଳ୍ପ ଦୂରରୁ ଶତ୍ରୁ ପକ୍ଷର ବନ୍ଧୁକ ସବୁ ହଠାତ୍ ଗର୍ଜି ଉଠିଲା । ଯୁଦ୍ଧ କ୍ଷେତ୍ରରେ ଏଇ ଭଳି ଅଚାନକ ଘଟଣାର ଷ୍ଟ୍ରାଟେଜି (strategy) ହେଲା, ସଙ୍ଗେ ସଙ୍ଗେ ପଛକୁ ହଟିଯିବା—ଯାହାକୁ ରିଟ୍ରିଟ୍ (retreat) କୁହାଯାଏ । ଆଖି ପିଛୁଳାକେ ଆମ କମ୍ପାନୀର ଜଓ୍ୱାନ୍‌ମାନେ ପଛକୁ ହଟିଗଲେ । ଖାଇବା ଜିନିଷ ସେମିତି ପଡ଼ି ରହିଥାଏ । କିଣ ଭାବି କେଜାଣି ମୋ ଜଓ୍ୱାନ ଭାଇଟି ପୂରାପୂରି ପଛକୁ ନ ହଟି, ଅଳ୍ପ କିଛି ଦୂରରେ ଗୋଟିଏ ସୁବିଧା ଜାଗା ଦେଖି ଛପି ରହିଲା । ···କାହିଁକି ଛପିଲା ? ଏକୁଟିଆ ସେ—କାଳେ ଶତ୍ରୁ ସୈନ୍ୟଙ୍କ ହାତରେ ଧରା ପଡ଼ିଯିବ ! ମୋ ମନରେ ଭୟ । ମୋ ଜନ୍ମ କାଳରୁ ମୁଁ ଏଇ ଜଓ୍ୱାନଟି ପାଖରେ ରହି ରହି ତା' ପ୍ରତି ମୋର ଖୁବ୍ ଦରଦ ଆସି ଯାଇଚି । ସେ ନିଜେ ଯେମିତି ଵୀର, ମତେ ବି ସେମିତି ଆଦର ଯତ୍ନ କରି ରଖିଚି । ମୋ ମନ ଭିତରେ ସବୁବେଳେ ତାର ମଙ୍ଗଳ ଚିନ୍ତା । ପଛକୁ ହଟି ନ ଯାଇ କାହିଁକି ସେ ଏଠି ଛପିଲା ? ···ପୁଣି ବନ୍ଧୁକ ଫୁଟିଲା । ପରେ ଶତ୍ରୁ ସୈନ୍ୟ ମାଡ଼ି ଆସିଲେ । ଆମ ଜଓ୍ୱାନ୍‌ମାନଙ୍କ ଖାଇବା ଜିନିଷ ତକ ଯେମିତି ସେମାନଙ୍କ ଆଖିରେ ପଡ଼ିଚି, ସଙ୍ଗେ ସଙ୍ଗେ ବସି ପଡ଼ି ଖାଇବା ଆରମ୍ଭ କରିଦେଲେ । ବାବ୍‌ବା ! ଯେମିତି ଅସୁର ଭଳି ସେମାନେ

ଖାଉଥା'ନ୍ତି ! ଗୋଟା ଗୋଟା ରୁଟି ପାଟିରେ ପୂରେଇ ଦଉଥା'ନ୍ତି—ମାଂସର ହାଡ଼କୁ ବି ରଡ଼ ରଡ଼ କରି ଚୋବାଉ ଥା'ନ୍ତି । ଭୋକଲା କୁକୁରତ ! ମୁଁ ଏସବୁ ଦେଖି କାବ୍‌ବା ହୋଇ ଯାଉଥାଏ ! ଏଇ ଦୃଶ୍ୟ ଦେଖିବ ବୋଲି କ'ଣ ମୋ ଜଓ୍ୱାନ୍ ଟି ଏଠି ଛପି ରହିଥିଲା ।···ସେମାନେ ଖାଇ ସାରି ଉଠିଲେ । ତାଙ୍କ ଭିତରୁ କେବଳ ଜଣେ ସୈନ୍ୟ ଧୀରେ ସୁସ୍ଥେ ବସି ଖାଉଥାଏ । ଅନ୍ୟମାନେ ତାଙ୍କ ଭାଷାରେ କ'ଣ ତାକୁ ପଦେ ଅଧେ କହି ଫେରିଗଲେ । ଏ ସୈନ୍ୟଟା ଖୁବ୍ ମନ ଖୁସିରେ ମଥା ହଲାଇ, ଗୁଣୁ ଗୁଣୁ ଗୀତ ଗାଇ, ଗୃଖି ଗୃଖି ଟାକରା ଫୁଟେଇ ଖାଉଥାଏ । ମତେ ତା ଢଙ୍ଗ ଦେଖି ଭାରି ହସ ମାଡୁଥାଏ । ସୁବିଧାରେ ବସି ଖାଇବ ବୋଲି ତା ବନ୍ଧୁକଟାକୁ କାନ୍ଧରୁ କାଢ଼ି ତଳେ ରଖିଦେଲା । ସତେ ଯେମିତି ଗୋଟାଏ ଡାଆଣା ଟକଲା ପିଲା । ଏତିକବେଳେ ମୋ ଜଓ୍ୱାନ ଭାଇଟି ପାଦ ଚପି ଚପି ସେ ସୈନ୍ୟଟାର ପଛ ପଟୁ ଯାଇ ତା ସାମ୍ନାରେ ଠିଆ ହୋଇଗଲା । ଜଓ୍ୱାନକୁ ଦେଖି ତା' ପାଟି ଆଁ ହୋଇଗଲା । ସେ ପାଟି କରିବା ପୂର୍ବରୁ ମୋ ଜଓ୍ୱାନ ବନ୍ଧୁକ ଦେଖାଇ ତାକୁ ଚୁପ୍ ରହିବା ପାଇଁ ନୀରବ ଆଦେଶ ଦେଲା । ସେ ପାଟି କରି-ପାରିଲା ନାହିଁ । ହେଲେ ପାଟି ସେମିତି ଆଁ ହୋଇ ରହିଛି । ପାଟି ଭିତରେ ଖାଇବା ଜିନିଷ ଭର୍ତ୍ତି । ମତେ ଆହୁରି ହସ ମାଡ଼ୁଥାଏ । ତା'ପରେ ମୋ ଜଓ୍ୱାନ ଭାଇର ଆଦେଶରେ ସିଏ ସବୁଯାକ ପ୍ଲେଟ ଗୋଟେଇ ତା ମୁଣ୍ଡ ଉପରେ ରଖି, ହ' ହାତରେ ପ୍ଲେଟ ସବୁକୁ ଧରି ଉଠି ଠିଆ ହେଲା । ସେତେବେଳକୁ ମୋ ଜଓ୍ୱାନ ଭାଇ ସେ ସୈନ୍ୟଟାର ବନ୍ଧୁକଟାକୁ ଆଣି ନିଜ କାନ୍ଧରେ ଝୁଲେଇ ସାରିଛି । ତା' ପରେ ଶତ୍ରୁ ସୈନ୍ୟଟାକୁ ଆମ କ୍ୟାମ୍ପଆଡ଼କୁ ଯିବାପାଇଁ ମାର୍ଚ୍ଚ ଅର୍ଡ଼ର ଦେଲା । ମୁଁ ହସି ହସି ନସ୍ତାନ୍ତ···

କୁହନ୍ତୁ ଚ—ଗୁଡ଼ାଏ ଅଇଁଠା ପ୍ଲେଟକୁ ମୁଣ୍ଡ ଉପରେ ରଖି ଆଉ ସେ ପ୍ଲେଟ ସବୁକୁ ଦ' ହାତରେ ଧରି ଜଣେ ଶତ୍ରୁ ସୈନ୍ୟ ଆଗେ ଆଗେ ଚାଲିଚ—ଆଉ ମୋର ଏତେ ଦଳର ସାଥି ମୋ ଜଓ୍ୱାନଟି ଦ' କାନ୍ଧରେ ଦ'ଟା ବନ୍ଧୁକ ଝୁଲେଇ ତା ପଛେ ପଛେ ଚାଲିଚ—କି ଚମତ୍କାର ଦୃଶ୍ୟ ! ଯୋଉ ଯୁଦ୍ଧ ଭୂମିରେ ରକ୍ତର ସୁଅ ଛୁଟୁଥାଏ, ମୁଁ ଯୁଦ୍ଧକୁ ଯାଇ ନଥିଲେ, ସେଠି ଏମିତି ଗୋଟିଏ ମଜା ଘଟଣା କ'ଣ ଦେଖି ପାରିଥାନ୍ତ ?



## ଏଇ ଲେଖକଙ୍କର
## ଅନ୍ୟ କେତୋଟି ନାଟକ

ଭରସା

ସହଧର୍ମିଣୀ

ଝନ୍‌ଜା

ଅମଡ଼ା ବାଟ

ନଷ୍ଟ ଉର୍ବଶୀ

ପରକଲମ

ପଥିକ ବନ୍ଧୁ

ସାଧନା

ଦଳ ବେହେରା

ମଲ୍ଲ ଜହ୍ନ

ଶଙ୍ଖା ସିନ୍ଦୂର

ଅର୍ଦ୍ଧାଙ୍ଗିନୀ

ଓ

ଗୀତିନାଟ୍ୟ ପଞ୍ଚବଟୀ

